

# ଆବ୍ରାହାମ ଲିଙ୍କନଙ୍କର ବକ୍ତୃତାବଳୀ

ଏହି ପୁସ୍ତିକାର ମଲାଟରେ ମୁଦ୍ରିତ ଛବିଟି ଯୁକ୍ତରାଷ୍ଟ୍ରର ଷୋଡ଼ଶତମ ସଭାପତି ଆବ୍ରାହାମ ଲିଙ୍କନଙ୍କ ଆବକ୍ଷ ମୂର୍ତ୍ତି । ଛବିଟି ଆଙ୍କିଛନ୍ତି ଯୁକ୍ତରାଷ୍ଟ୍ର ୩୪ତମ ସଭାପତି ଡେୱାଇଟ ଡି, ଆଇଜେନ ହାୱାର । ତାଙ୍କର ବହୁ ପ୍ରିୟତମ ବସ୍ତୁ ମଧ୍ୟରେ ଛବିଅଙ୍କା ଗୋଟିଏ ।

# ଆବ୍ରାହମ ଲିଙ୍କନଙ୍କର ବକ୍ତୃତାବଳୀ

ଜଣେ ବିଶିଷ୍ଟ ଆମେରିକାବାସୀଙ୍କର
ରଚନା ଏବଂ ଭାଷଣର ସଙ୍କଳନ

# ଭୂମିକା

"ଆମ୍ଭେମାନେ ଏହି ସ୍ଥାନରେ ଯାହା କହୁଛୁଁ ପୃଥିବୀର ଜନସାଧାରଣ ତାହାପ୍ରତି ବିଶେଷ ମନଯୋଗ ଦେବେନାହିଁ କିମ୍ବା ତାହାକୁ ସ୍ମରଣ ମଧ୍ୟ ରଖିବେ ନାହିଁ"………

୧୮୬୩ ମସିହା ନଭେମ୍ବର ୧୯ ତାରିଖରେ ପେନ୍‌ସିଲଭ୍ୟାନିଆର ଅନ୍ତର୍ଗତ ଗେଟିସବର୍ଗରେ ଏହିଭଳି ଭାବରେ ଗଭୀର ବିନୟର ସହିତ ଆବ୍ରାହାମ ଲିଙ୍କନ ତାଙ୍କର ଭାଷଣ ଦେଇଥିଲେ । ଏହାହିଁ ଥିଲା ତାଙ୍କର ସାଧୁ ମତବାଦ ! ସେହି ବିଶେଷ ସ୍ଥାନରେ ଏକ ମହାରଣରେ ମନୁଷ୍ୟମାନେ ମୃତ୍ୟୁ ବରଣ କରିଥିଲେ ; ଯେଉଁ ସମରହିଁ ଗେଟିସବର୍ଗର ନାମ ଅକ୍ଷୟ କରି ରଖିବ, ସେଠାରେ କିପରି ଆଶା କରାଯିବ ଯେ ଜନସାଧାରଣ ତାଙ୍କର କେତୋଟି ସାମାନ୍ୟ କଥା ମନେ କରି ରଖିବେ ?

କିନ୍ତୁ ଲିଙ୍କନ ଏ ବ୍ୟାପାରରେ ଭୁଲ କରିଥିଲେ । ସେହି ଦିବସରେ ସେ ଅନାଡ଼ମ୍ବରରେ ଯେ କେତୋଟି ସହଜ କଥା କହିଥିଲେ ତାହା ପ୍ରକୃତରେ ଦୀର୍ଘକାଳ ପର୍ଯ୍ୟନ୍ତ ସ୍ମରଣୀୟ ହୋଇ ରହିଅଛି, ଏବଂ ଯେତେଦିନ ପର୍ଯ୍ୟନ୍ତ ଗେଟିସବର୍ଗ ବକ୍ତୃତାର ସଂକ୍ଷେପ ଓ ସ୍ପଷ୍ଟଭାବେ ପ୍ରକାଶିତ ଆଦର୍ଶକୁ ଜନସାଧାରଣ ପୋଷଣ କରି ଚାଲିବେ ତେତେଦିନ ପର୍ଯ୍ୟନ୍ତ, ଚିରକାଳହିଁ ତାହା ସ୍ମରଣୀୟ ହୋଇ ରହିବ ।

ତାଙ୍କର ଜୀବନକାଳ ମଧ୍ୟରେ ସେ ଆହୁରି ମଧ୍ୟ ଯେଉଁସବୁ କଥା କହିଥିଲେ ବା ଲେଖିଥିଲେ ସେ ଗୁଡ଼ିକ ଯେ "ଦୀର୍ଘଦିନ ପର୍ଯ୍ୟନ୍ତ ସ୍ମରଣୀୟ ହୋଇ ରହିବ" ଲିଙ୍କନ ତାହା ଆଶା କରି ନଥିଲେ—ଯେପରି ଆଶା କରି ନଥିଲେ ଗେଟିସବର୍ଗ ବକ୍ତୃତାର କ୍ଷେତ୍ରରେ । ରାଷ୍ଟ୍ରର ପ୍ରତିଷ୍ଠାର ପରେ ସର୍ବାପେକ୍ଷା ସଙ୍କଟଜନକ ସମୟରେ ସଭାପତିରୂପେ ଅବସ୍ଥାନ କରି ଲିଙ୍କନ ଅବଶ୍ୟ ଜାଣିଥିଲେ ଯେ ସେ ଇତିହାସରେ ଏକ ଅଧ୍ୟାୟ ସୃଷ୍ଟି କରୁଛନ୍ତି । ତାଙ୍କ ଉପରେ ନ୍ୟସ୍ତ ଥିବା ବିରାଟ ଦାୟିତ୍ୱ ସମ୍ପର୍କରେ ସେ ସମ୍ପୂର୍ଣ୍ଣରୂପେ ସଚେତନ ଥିଲେ । ସେଥିଯୋଗୁଁ ଦେଶବାସୀଙ୍କୁ ବକ୍ତୃତା ଦେବା ସମୟରେ ସେ ସଯତ୍ନରେ ଶବ୍ଦ ସଂଗ୍ରହ କରି ବକ୍ତୃତା ଦିଅନ୍ତି । ସେ ଯେତେବେଳେ ଯେଉଁଠାରେ ଭାଷଣ ଦିଅନ୍ତି ସେଠାକାର ନରନାରୀମାନଙ୍କର ମନକୁ ତାହା ସ୍ପର୍ଶ କରେ ।

ଯେଉଁଥିରେ ସେମାନେ ଯଥାଯଥ ସିଦ୍ଧାନ୍ତ ଗ୍ରହଣ କରି ପାରିବେ ଏବଂ ସେଗୁଡ଼ିକୁ ମାନି ଚାଲିବେ, ସେଥିପାଇଁ ସେ "ଜନଗଣ ପାଇଁ, ଜନଗଣ ଦ୍ୱାରା ଗଠିତ, ଜନଗଣର ସରକାର"—ଏହାର ପ୍ରଧାନ କାର୍ଯ୍ୟ ନିର୍ବାହକ ହିସାବରେ ସେ ତାଙ୍କର ସ୍ୱଦେଶବାସୀମାନଙ୍କୁ ପ୍ରଭାବିତ କରିବାକୁ ଚେଷ୍ଟା କରିଥିଲେ । ଏହି ଉଦ୍ଦେଶ୍ୟର ସାଧନ ପାଇଁ ସେ ବକ୍ତୃତା ଦେଇଥିଲେ ଏବଂ ଲେଖିଥିଲେ । କେବଳମାତ୍ର ମାର୍କିଣ ଯୁକ୍ତରାଷ୍ଟ୍ରରେ ନୁହେଁ, ସମଗ୍ର ବିଶ୍ୱରେ ଆଗାମୀ ଯୁଗର ଅସଂଖ୍ୟ ନରନାରୀ ଯେ ତାଙ୍କର ବାକ୍ୟାବଳୀ ପଢ଼ିବେ,

ଅନୁଶୀଳନ କରିବେ ଏବଂ ଅନୁଧ୍ୟାନ କରିବେ ସେହି ଧାରଣା ଏହି ନିରହଙ୍କାର ବ୍ୟକ୍ତିର ମନରେ କୌଣସି ସ୍ଥାନ ପାଇବାର ସମ୍ଭାବନା ନଥିଲା—ସେ କେତେକ ବର୍ଷ ପୂର୍ବେ ଜଣେ ବନ୍ଧୁଙ୍କୁ ଲେଖିଲେ, "ମୁଁ ଅକପଟ ଭାବରେ କହିବାକୁ ବାଧ୍ୟ ଯେ ମୁଁ ନିଜକୁ ସଭାପତି ପଦ ପାଇଁ ଉପଯୁକ୍ତ ବୋଲି ମନେ କରେନାହିଁ ।"

କେବଳମାତ୍ର ସଭାପତି ଥିବା ସମୟରେ ନୁହେଁ ସମଗ୍ର ଜୀବନ ବ୍ୟାପି ସେ ଯାହା କହିଛନ୍ତି ବା ଲେଖିଛନ୍ତି ପ୍ରାୟ ଶତାବ୍ଦୀକାଳ ପୂର୍ବେ ତାଙ୍କର ମୃତ୍ୟୁର ପରଠାରୁ ଅଦ୍ୟାବଧି ପର୍ଯ୍ୟନ୍ତ ସେ ଗୁଡ଼ିକ ଆଗ୍ରହରେ ସଂଗୃହୀତ ହୋଇ ସଯତ୍ନରେ ରକ୍ଷିତ ହୋଇଅଛି ଏବଂ ପ୍ରକାଶିତ ଓ ପୁନଃ ପ୍ରକାଶିତ ହୋଇଅଛି । ତାଙ୍କର ଜନୈକ ବିଖ୍ୟାତ ଜୀବନୀକାର କାର୍ଲ ସ୍ୟାଣ୍ଡବାର୍ଗଙ୍କ ଉକ୍ତି ଅନୁସାରେ ଲିଙ୍କନଙ୍କର ମୁଦ୍ରିତ ବକ୍ତୃତା ଏବଂ ରଚନାବଳୀରେ ମୋଟ ୧,୦୭୮,୩୬୪ ଶବ୍ଦ ଅଛି ।

ଲିଙ୍କନଙ୍କର ୧୫୦ ତମ ଜନ୍ମବାର୍ଷିକ ସମାରୋହ ଉପଲକ୍ଷେ ମାର୍କିଣ ଯୁକ୍ତରାଷ୍ଟ୍ରର ଜନସାଧାରଣଙ୍କର ଅନ୍ୟତମ ମହାନ ଉତ୍ତରାଧିକାର, ଶବ୍ଦ ଏବଂ ଚିନ୍ତାର ମହାମୂଲ୍ୟ ଖଣିରୁ ନିର୍ବାଚିତ ଅଂଶବିଶେଷ ଏହି ପୁସ୍ତିକାରେ ସନ୍ନିବିଷ୍ଟ ହୋଇଅଛି ।

ଲିଙ୍କନଙ୍କର ସମ୍ପୂର୍ଣ୍ଣ ରଚନାବଳୀ ସଙ୍କଳନର ସମ୍ପାଦନାରେ ବିଖ୍ୟାତ ରୟ ପି, ବେସଲରଙ୍କ ଭାଷାରେ ଏଗୁଡ଼ିକ "ମହାନ ମନ ଏବଂ ହୃଦୟର ମହିମା, ଯାହା ଚିନ୍ତାରେ ନ୍ୟାୟପରାୟଣତା, କାର୍ଯ୍ୟରେ ସାଧୁତା ଏବଂ ବାକ୍ୟରେ ସୌନ୍ଦର୍ଯ୍ୟର ପ୍ରତ୍ୟାଶୀ । ସେଥିରେ ସୃଷ୍ଟିଧର୍ମୀ ଚେତନା ରୂପ ଲାଭ କରିଥିଲା ଏବଂ ତନ୍ମଧ୍ୟରେ ଊନବିଂଶ ଶତାବ୍ଦୀର ଆମେରିକାର ବାସ୍ତବତା ଜୀବନ ଲାଭକରି ଅଦ୍ୟାପି ପ୍ରାଣବନ୍ତ ରହିଅଛି । ଲିଙ୍କନ ଏହି ବାସ୍ତବତାର ସହିତ ଓତଃପ୍ରୋତଭାବରେ ଜଡ଼ିତ; ତାଙ୍କର ପ୍ରକାଶଭଙ୍ଗୀ ଅନୁକରଣୀୟ । ତାଙ୍କର କଥାଗୁଡ଼ିକ ସେଥିଯୋଗୁଁ ବର୍ତ୍ତମାନ ସୁଦ୍ଧା ସ୍ମରଣୀୟ ହୋଇ ରହିଅଛି । ତାଙ୍କ ଯୁଗର ସେ ସମ୍ପୂର୍ଣ୍ଣ ପ୍ରତିଛବି—ଆଦର୍ଶ ପୁରୁଷ । ଫଳରେ ଆମ୍ଭେମାନେ ଯେତେବେଳେ ତାହାଙ୍କୁ ଅନୁଧାବନ କରିବାକୁ ଯାଉଁ ତେତେବେଳେ ତାହାଙ୍କୁ ଅତୀତ ଦିନର ଶ୍ରେଷ୍ଠ ସାହିତ୍ୟିକମାନଙ୍କ ଅପେକ୍ଷା ମହାନ ଚରିତ୍ରରୂପେ ଦେଖୁ । ସାଧାରଣ ନାଗରିକ ଏବଂ ସଭାପତି ହିସାବରେ ସେ ଯେଉଁସବୁ କାର୍ଯ୍ୟ କରିଥିଲେ ହୁଏତ କୌଣସି ଯୁଗରେ ସେ ସମସ୍ତଙ୍କର ବାସ୍ତବ ତାତ୍ପର୍ଯ୍ୟ ମ୍ଳାନ ହୋଇପାରେ; କିନ୍ତୁ ଯେ ଭାସ୍ୱର ଆତ୍ମା ତାଙ୍କର କଥାଗୁଡ଼ିକୁ ଉଦ୍ଭାସିତ କରି ରଖିଅଛି, ଆମ୍ଭମାନେ ତାହାଙ୍କୁ ବିସ୍ମୃତ ହେଲେ ଚଳିବ ନାହିଁ, ଏବଂ ତାଙ୍କର ମହତ୍ତ୍ୱକୁ ମଧ୍ୟ ସ୍ୱୀକାର କରିବାକୁ ହେବ ।"

ଦ୍ରଷ୍ଟବ୍ୟ :—ମିଃ ରୟ ପି, ବେସଲରଙ୍କର ଉକ୍ତ ଉଦ୍ଧୃତାଂଶଟି ଆବ୍ରାହାମ ଲିଙ୍କନଙ୍କ ଭୂମିକାରୁ ଗୃହୀତ । ତାଙ୍କର ବକ୍ତୃତା ଓ ରଚନାବଳୀ : ମିଃ ବେସଲର ସମ୍ପାଦିତ ଏବଂ ଦି ଓ୍ୱାର୍ଲଡ ପାବ୍ଲିଶିଂ କୋଃ କର୍ତ୍ତୃକ ପ୍ରକାଶିତ ପୁସ୍ତକରୁ ସେମାନଙ୍କର ଅନୁମତିକ୍ରମେ ଗୃହୀତ ।



ସାରା ଦିନ ପରିଶ୍ରମ କରିବା ପରେ, ରାତ୍ରି ସମୟରେ
ଲିଙ୍କନ ପ୍ରଦୀପ ବା ଅଗ୍ନୀ ଶିଖାର ଆଲୋକରେ
ଯେଉଁ ବହି ପାଆନ୍ତି ତାକୁ ପଢ଼ି ଶେଷ କରନ୍ତି;
ଏହିପରି ଭାବରେ ସେ ନିଜକୁ ଶିକ୍ଷିତ କରିଥିଲେ ।

## ଜନସାଧାରଣ ସମ୍ମୁଖରେ ପ୍ରଥମ ବକ୍ତୃତା

*୧୮୩୨ ମସିହାରେ ଇଲିନିୟସ୍‌ର ସାଧାରଣ ପରିଷଦ ପାଇଁ ଜଣେକ ପ୍ରାର୍ଥୀରୂପେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ସ୍ଥିରକରି ଲିଙ୍କନ ଜନସାଧାରଣ ସମ୍ମୁଖରେ ଯେତେବେଳେ ସର୍ବପ୍ରଥମ ଭାଷଣ ଦିଅନ୍ତି, ସେତେବେଳେ ତାଙ୍କୁ ମାତ୍ର ୨୩ବର୍ଷ । ଏଠାରେ ତାଙ୍କ ବକ୍ତୃତାର ଯେଉଁ ଅଂଶ ଗୁଡ଼ିକ ଉଦ୍ଧୃତ ହୋଇଅଛି ତନ୍ମଧ୍ୟରୁ ସ୍ଥାନୀୟ ଆଇନ ପ୍ରଣୟନ ସଂବନ୍ଧରେ ତାଙ୍କର ଅନେକ ମତବାଦର ବିସ୍ତୃତ ବିବରଣ ବାଦ ଦିଆଯାଇଥିଲେ ମଧ୍ୟ, ତଥାପି ତାଙ୍କର ଉଦାତ୍ତମନର ପ୍ରେରଣାର ଅନେକ ସୂଚନା ଦିଏ ।*

ନାଗରିକ ବନ୍ଧୁଗଣ,

ଏହି ରାଷ୍ଟ୍ରର ପରବର୍ତ୍ତୀ ଗଣପରିଷଦର ବରେଣ୍ୟ ପ୍ରତିନିଧି ପଦ ପାଇଁ ମୁଁ ଜଣେ ପ୍ରାର୍ଥୀ ହୋଇଅଛି । ଚିରଚଳିତ ପ୍ରଥା ତଥା ପ୍ରଜାତନ୍ତ୍ର ଶାସନର ନୀତି ଅନୁଯାୟୀ ସ୍ଥାନୀୟ ସମସ୍ୟା ସମ୍ପର୍କରେ ମୋର ମନୋଭାବ ଆପଣମାନଙ୍କୁ, ଅର୍ଥାତ୍ ଯେଉଁମାନଙ୍କର ମୁଁ ପ୍ରତିନିଧିତ୍ୱ କରିବାକୁ ଯାଉଛି ସେମାନଙ୍କ ସମ୍ମୁଖରେ ବ୍ୟକ୍ତ କରିବାହିଁ ମୋର ପ୍ରଧାନ କର୍ତ୍ତବ୍ୟ ।

ଜନକଲ୍ୟାଣ ଯେ କେତେଦୂର ଆଭ୍ୟନ୍ତରୀଣ ଉନ୍ନତି ମାର୍ଗରେ ସହାୟକ ତାହା ଅତୀତର ଅଭିଜ୍ଞତାରୁ ଯଥେଷ୍ଟ ଶିକ୍ଷା ପାଇଛେ । ସୁନ୍ଦର ସୁନ୍ଦର ରାସ୍ତାଘାଟ ନିର୍ମାଣ ଓ ପ୍ରାନ୍ତରେ ଥିବା ସୁନାବ୍ୟ ନଦୀ ନାଳଗୁଡ଼ିକର ଖନନ ଓ ଶୋଧନ ଦ୍ୱାରା ସର୍ବାଧିକ ଦରିଦ୍ର ଓ ସର୍ବାପେକ୍ଷା ଜନବିରଳ ଦେଶ ଗୁଡ଼ିକର ଉନ୍ନତି ନିଶ୍ଚୟ ସମ୍ଭବ ବୋଲି କେହି ଅସ୍ୱୀକାର କରି ପାରିବେ ନାହିଁ । କିନ୍ତୁ, ତଥାପି କାର୍ଯ୍ୟ ସମ୍ପନ୍ନ କରିବାର ସମର୍ଥ ଅଛି କି ନା ତାହା ଆଗେ ବିଚାର ନ କରି ଯଦି ଏତାଦୃଶ କିମ୍ବା ଅନ୍ୟ ଯେ କୌଣସି କାର୍ଯ୍ୟ ଆରମ୍ଭ କରାଯାଏ, ତାହା ଏକ ନିର୍ବୋଧତାର ପରିଚୟ ଦେବା ବ୍ୟତୀତ ଅନ୍ୟକିଛି କୁହାଯାଇ ନପାରେ—କାରଣ ଅର୍ଦ୍ଧସମାପ୍ତ କାର୍ଯ୍ୟ ଶ୍ରମର ଅପବ୍ୟୟ ବ୍ୟତୀତ ଅନ୍ୟକିଛି ନୁହେଁ……

ଶିକ୍ଷା ସମ୍ବନ୍ଧରେ କୌଣସି ପରିକଳ୍ପନା ବା ସମ୍ମାନିତ ପଦ୍ଧତିକୁ ବଳ ପୂର୍ବକ ପ୍ରଚଳନ କରିବା ମୋର ଇଚ୍ଛା ନୁହେଁ । ମୁଁ ଏତିକି ମାତ୍ର କହିପାରେ ଯେ, ବିଷୟଟି ଆମ୍ଭମାନଙ୍କର ସମଗ୍ର କାର୍ଯ୍ୟାବଳୀ ମଧ୍ୟରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ବୋଲି ମୋର ମନେହୁଏ । ପ୍ରତ୍ୟେକ ବ୍ୟକ୍ତି ଅନ୍ତତଃ କିଛି ନା କିଛି ଶିକ୍ଷାର୍ଜ୍ଜନ କରିବା ଦ୍ୱାରା ସ୍ୱଦେଶ ଓ ବିଦେଶର ଇତିହାସ ପଢ଼ିବାକୁ ସକ୍ଷମ ହେବେ ଏବଂ ତଦ୍ୱାରା ଆମ୍ଭମାନଙ୍କର

ନିୟନ୍ତ୍ରଣମୁକ୍ତ ଆଚରଣବିଧି ତଥା ନିୟମ ପ୍ରଣାଳୀ ଗୁଡ଼ିକର ମୂଲ୍ୟ ଉପଲବ୍ଧି କରି ପାରିବେ—କେବଳମାତ୍ର ଏଥିପାଇଁହିଁ ଶିକ୍ଷା ବିଷୟଟିର ଗୁରୁତ୍ୱ ଅପରିହାର୍ଯ୍ୟ—ଧର୍ମ ପୁସ୍ତକ ଏବଂ ଧର୍ମନୀତି ସମ୍ପର୍କୀୟ ବିରାଟ ଗ୍ରନ୍ଥ ଅଧ୍ୟୟନ କରିବାକୁ ଜନସାଧାରଣ ସକ୍ଷମ ହେଲେ ଯେ ସୁବିଧା ଓ ସନ୍ତୋଷ ଲାଭ କରିବେ ତାହା ମୁଁ କହୁନାହିଁ। ବ୍ୟକ୍ତିଗତ ଭାବେ ମୁଁ ସେହିଦିନର ପ୍ରତୀକ୍ଷା କରିଛି, ଯେତେବେଳେ ଶିକ୍ଷା ଓ ତାହାର ମାଧ୍ୟମରେ ନୀତି ପରାୟଣତା, ସଂଯମ, ଉଦ୍ଦ୍ୟମ ଓ ଅଧ୍ୟବସାୟ ଜନସାଧାରଣ ମଧ୍ୟରେ ବର୍ତ୍ତମାନ ଅପେକ୍ଷା ବ୍ୟାପକତର ହେବ, ସେହି ସୁଖମୟ ସମୟକୁ ତ୍ୱରାନ୍ୱିତ କରିବାକୁ ଏପରି କୌଣସି ବ୍ୟବସ୍ଥା ଅବଲମ୍ବନ କରିବାକୁ ସୁଯୋଗ ପାଇଲେ ମୁଁ ଖୁସି ହେବି।

ଯୌବନାବସ୍ଥାରେ ଲୋକମାନେ ଯେତେ ପରିମାଣରେ ବିନୟୀ ହେବା ଉଚିତ, ସେହି ବିଚାରରେ ଅନ୍ତତଃ ମୁଁ ଶୋଭନାର ସୀମା ଅତିକ୍ରମ କରିଅଛି। ତେବେ ଆଲୋଚ୍ୟ ବିଷୟ ଗୁଡ଼ିକ ସମ୍ପର୍କରେ ମୋର ଯାହା ଅଭିମତ ତାହା ମୁଁ ପ୍ରକାଶ କରିଅଛି। କୌଣସି ଗୋଟିଏ କିମ୍ବା ସମ୍ପୂର୍ଣ୍ଣ ବିଷୟଟି ସମ୍ବନ୍ଧରେ ମୋର ଧାରଣା ଭୁଲ ହୋଇପାରେ; କିନ୍ତୁ ମୁଁ ଏହି ନୀତିରେ ବିଶ୍ୱାସ କରେ ଯେ, ସର୍ବଦା ଭ୍ରାନ୍ତ ହେବା ଅପେକ୍ଷା ସମୟ ସମୟରେ ସଠିକ୍ ବାଟରେ ଚାଲିବା ଶ୍ରେୟସ୍କର, ଏବଂ ସେହି କାରଣରୁ ଯେତେବେଳେ ମୋର ଅଭି-ମତର ଭ୍ରାନ୍ତି ଉପଲବ୍ଧି କରିବି ତତ୍କ୍ଷଣାତ୍ ତାକୁ ପରିତ୍ୟାଗ କରିବାକୁ ସବୁ ସମୟରେ ପ୍ରସ୍ତୁତ ରହିବି।

ପ୍ରତ୍ୟେକ ଲୋକର ସ୍ୱତନ୍ତ୍ର ଧରଣର ଅଭିଳାଷ ଓ ଆକାଂକ୍ଷା ଥାଏ। ହୁଏତ ଏହା ସତ୍ୟ ହୋଇପାରେ ବା ମିଥ୍ୟା ହୋଇପାରେ, ମୁଁ ଅନ୍ତତଃ ଏତିକି କହିପାରେ ଯେ, ନିଜକୁ ଜନସାଧାରଣଙ୍କର ଶ୍ରଦ୍ଧାଭାଜନ କରି, ସେମାନଙ୍କର ଶ୍ରଦ୍ଧା ଅର୍ଜ୍ଜନ କରିବା ଅପେକ୍ଷା ଅନ୍ୟ କୌଣସି ଉଚ୍ଚାକାଂକ୍ଷା ମୋର ନାହିଁ। ଏହି ଉଚ୍ଚାକାଂକ୍ଷା ପୂର୍ତ୍ତି କରିବାକୁ ମୁଁ କେତେଦୂର ସକ୍ଷମ ହେବି ତାହା ଭବିଷ୍ୟତରେ କହିପାରେ। ମୁଁ ଜଣେ ଅଳ୍ପ ବୟସ୍କ ଯୁବକ ଏବଂ ଆପଣମାନଙ୍କ ମଧ୍ୟରୁ ଅନେକଙ୍କୁ ଅଜଣା ମଧ୍ୟ। ମୁଁ ଅତ୍ୟନ୍ତ ଦରିଦ୍ର ଅବସ୍ଥାରେ ଜନ୍ମ ଗ୍ରହଣ କରିଛି ଏବଂ ବର୍ତ୍ତମାନ ମଧ୍ୟ ସେହି ଅବସ୍ଥା ଅଛି। ମୋତେ ସୁପାରିଶ କରିବା ଭଳି ବିଭବଶାଳୀ ଆତ୍ମୀୟ ସ୍ୱଜନ ମୋର କେହି ନାହାଁନ୍ତି। ମୋର ଭବିଷ୍ୟତ ସମ୍ପୂର୍ଣ୍ଣରୂପେ ଏହି ଦେଶର ସ୍ୱାଧୀନ ଭୋଟ-ଦାତାଙ୍କ ଉପରେ ନିର୍ଭର କରେ; ମୁଁ ଯଦି ନିର୍ବାଚିତ ହୁଏ, ତାହାହେଲେ ସେହିମାନଙ୍କର ଅନୁଗ୍ରହରୁହିଁ ହେବ ଏବଂ ସେହି ଅନୁଗ୍ରହର ମୂଲ୍ୟ ଦେବାପାଇଁ ମୁଁ ଅବିରାମ ପରିଶ୍ରମ କରିବି। କିନ୍ତୁ ଯଦି ଉପଯୁକ୍ତ ଲୋକମାନେ ମୋତେ ଅନ୍ତରାଳରେ ରଖିବାକୁ ଶ୍ରେୟସ୍କର ମନେ କରନ୍ତି ତେବେସୁଦ୍ଧା ମୁଁ ବିଶେଷ ଦୁଃଖିତ ହେବିନାହିଁ, କାରଣ ମୋର ଜୀବନରେ ମୁଁ ଅନେକ ଆଶାଭଙ୍ଗର ବେଦନା ସହିତ ଅଭ୍ୟସ୍ତ।

ଆପଣଙ୍କର ବନ୍ଧୁ ଓ ସହ-ନାଗରିକ
ଏ, ଲିଙ୍କନ

ନିଉସାଲେମ୍, ମାର୍ଚ୍ଚ ୯, ୧୮୩୨

## ରାଜନୈତିକ ବିଷୟଗୁଡ଼ିକ ସମ୍ପର୍କରେ

*(୧୮୩୯ ମସିହାରେ ତିରିଶ ବର୍ଷ ବୟସରେ ଲିଙ୍କନ ତାଙ୍କ ରାଷ୍ଟ୍ରରେ ଜଣେ ଖ୍ୟାତନାମା ରାଜନୈତିକ ନେତାରୂପେ ପରିଚିତ ହେଲେ। ଏହିବର୍ଷ ଡିସେମ୍ବର ମାସରେ ସ୍ପ୍ରିଂ-ଫିଲ୍ଡର ପ୍ରତିନିଧି ସଭା ଭବନରେ ସେ ସାମୟିକ ରାଜନୈତିକ ସମସ୍ୟାଗୁଡ଼ିକ ସମ୍ପର୍କରେ ଗୋଟିଏ ଭାଷଣ ଦେଲେ। ଏହି ଭାଷଣରୁ ପ୍ରତୀୟମାନ ହୋଇଥିଲା ଯେ, ସେ ଜଣେ ଦଳୀୟ ସମର୍ଥକ ବ୍ୟକ୍ତି। କାରଣ ଲିଙ୍କନ ସେ ସମୟରେ ହୁଇଗ (Whig) ଦଳକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରୁଥିଲେ। ସେହି ଯୁଗର ଦଳଟିର ଅସ୍ତିତ୍ୱ ବର୍ତ୍ତମାନ ମାର୍କିଣ ଯୁକ୍ତରାଷ୍ଟ୍ରରେ ଲୋପ ପାଇଅଛି। କିନ୍ତୁ ତଥାପି ଏହି ବକ୍ତୃତାଟିରେ ତାଙ୍କର ସ୍ୱାଭାବିକ ନୀତିନିଷ୍ଠାପରତାର ପରିଚୟ ମିଳେ। ବକ୍ତୃତାର ଉପସଂହାରରେ କୁହାଯାଇଥିଲା—)*

ମିଷ୍ଟର ଲ୍ୟାମ୍ବର୍ଣ୍ଣ ବିଭିନ୍ନ ରାଷ୍ଟ୍ରରେ ଅନୁଷ୍ଠିତ ବିଗତ ନିର୍ବାଚନର ଫଳାଫଳ ବିଶ୍ଳେଷଣ କରି ସୁନିଶ୍ଚିତ ଭାବରେ କହିଛନ୍ତି ଯେ, ଇଉନିୟନର ଅନ୍ତର୍ଗତ ପ୍ରତ୍ୟେକଟି ରାଷ୍ଟ୍ର ଆଗାମୀ ପ୍ରେସିଡେଣ୍ଟ ନିର୍ବାଚନରେ ମିଷ୍ଟର ଭ୍ୟାନ ବୁରେନ୍‌ (Van Buren)ଙ୍କୁ ଭୋଟ ଦେବେ। ଏହି ଯୁକ୍ତି କେବଳମାତ୍ର 'ଭୀରୁ' ଓ 'ଦୁର୍ବୃତ୍ତ' ମାନଙ୍କ ପ୍ରତି ପ୍ରଯୁଜ୍ୟ ହୋଇପାରେ; 'ସ୍ୱାଧୀନ' ଏବଂ 'ସାହସୀ' ନାଗରିକମାନଙ୍କୁ ତିଳେମାତ୍ର ବିଚଳିତ କରି ପାରିବ ନାହିଁ। ଏହା ସତ୍ୟ ହୋଇପାରେ, ଯଦି ତାହା ହୁଏ, ତେବେ ହେଉ। ଅନେକ ସ୍ୱାଧୀନଦେଶ ସେମାନଙ୍କର ସ୍ୱାଧୀନତା ହରାଇଛନ୍ତି; ଆମ ଦେଶ ମଧ୍ୟ ହରାଇପାରେ। କିନ୍ତୁ, ଯଦି ସ୍ୱାଧୀନତା ପ୍ରକୃତ ପକ୍ଷରେ କ୍ଷୁର୍ଣ୍ଣ ହୁଏ ତାହାହେଲେ ମୁଁ ଏହାକୁ ସମସ୍ତଙ୍କ ଶେଷରେ ପରିତ୍ୟାଗ କରିଥିଲି ବୋଲି ଗର୍ବିତ ନ ହୋଇ, ଏହା ଭାବି ଗର୍ବ ଅନୁଭବ କରିବି ଯେ, ମୁଁ କେବେହେଲେ ତାହାକୁ ପରିତ୍ୟାଗ କରିନାହିଁ। ମୁଁ ଜାଣେ ଯେ ଓ୍ୱାସିଂଟନରେ ଯେଉଁ ପ୍ରକାଣ୍ଡ ଆଗ୍ନେୟଗିରି ପାପାତ୍ମାମାନଙ୍କ ଦ୍ୱାରା ଜଳା ହୋଇ ରଖା ହୋଇଛି ତନ୍ମଧ୍ୟରୁ ରାଜନୈତିକ ଦୁର୍ନୀତିର ଲାଭା ବିସ୍ତୃତ ଏବଂ ଗଭୀର ସ୍ରୋତରେ ପ୍ରବଳ ବେଗରେ ନିର୍ଗତ ହୋଇ ଭୟାଭୟ ଗତିରେ ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ସମଗ୍ର ଦେଶକୁ ଆଚ୍ଛନ୍ନ କରିଅଛି—ଯେପରି ଏହା କୌଣସି ସବୁଜ ଚିହ୍ନ ବା ଜୀବନ୍ତ ପଦାର୍ଥକୁ ଅକ୍ଷତ ରଖିବ ନାହିଁ। ଏହାର ବକ୍ଷରେ ଯେଉଁ ଅସାଧୁତାର ସନ୍ତତିବର୍ଗ ନାରକୀୟ ଉଲ୍ଲାସରେ ଦାନବ ନ୍ୟାୟ ନୃତ୍ୟ କରି ତାହାର ହିଂସାତ୍ମକ ଗତିକୁ ପ୍ରତିରୋଧ କରିବାକୁ ସାହସ କରୁଛନ୍ତି ସେମାନଙ୍କ ଚେଷ୍ଟାର ନିଷ୍ଫଳତାର ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରି ପୈଶାଚିକ ଉଲ୍ଲାସରେ ସେମାନଙ୍କୁ ଉପହାସ କରୁଛି। ଏହି ସମସ୍ତ ଜାଣି ମୁଁ ଅସ୍ୱୀକାର କରିପାରୁ ନାହିଁ ଯେ ସମସ୍ତେ ଭାସିଯାଇ ପାରନ୍ତି। ଏହାର ବେଗରେ ମୁଁ ମଧ୍ୟ ଭାଙ୍ଗିଯାଇ ପାରେ; କିନ୍ତୁ ତେବେ ସୁଦ୍ଧା ମୁଁ ପରାଭବ ସ୍ୱୀକାର କରିବ ନାହିଁ। ଯେଉଁ ନୀତି ନ୍ୟାୟ ଉପରେ ଅଧିଷ୍ଠିତ ବୋଲି ଆମ୍ଭେମାନେ ବିଶ୍ୱାସ କରୁ, ସଂଗ୍ରାମରେ ପତନ ହେବ ବୋଲି ଭାବି ମୁଁ ନୀତିରୁ ବିଚ୍ୟୁତ ହେବିନାହିଁ।

ମୋର ଅନ୍ତରାତ୍ମା ସର୍ବଶକ୍ତିମାନ ଶ୍ରଷ୍ଟାର ସୃଷ୍ଟି ସହିତ ସାମଞ୍ଜସ୍ୟ ବିହୀନ ନୁହେଁ। ଏହିପରି ଉନ୍ନତ ଓ ବିକାଶ ମୁଁ ସେହି ସମୟରେ ଅନୁଭବ କରେ, ଯେତେବେଳେ ମୁଁ ଭାବେ ମୋର ଦେଶର ସ୍ୱାର୍ଥର

କଥା—ଯେଉଁ ଦେଶକୁ ସମଗ୍ର ବିଶ୍ୱ ପରିତ୍ୟାଗ କରିଅଛି, କେବଳ ମୁଁ ଏକାକୀ ବୀର ଦର୍ପରେ ବିଜୟୀ ଅତ୍ୟାଚାରୀମାନଙ୍କର ବିରୁଦ୍ଧାଚରଣ କରି ଛିଡ଼ା ହୋଇ ରହିଅଛି । ଏହି ସ୍ଥାନରେ ଫଳାଫଳ ଚିନ୍ତା ନ କରି, ପରମେଶ୍ୱର ଏବଂ ବିଶ୍ୱର ସମ୍ମୁଖରେ ମୁଁ ମୋର ଜୀବନ ଓ ମୋର ମୁକ୍ତିଦାତ୍ରୀ, ପ୍ରିୟ ଦେଶର ନ୍ୟାୟ ସ୍ୱାର୍ଥର ପ୍ରତି ଆନୁଗତ୍ୟର ଶପଥ ଗ୍ରହଣ କରିଛି । ଯେଉଁମାନେ ମୋର ନ୍ୟାୟକୁ ଉଚିତ୍ ବୋଲି ମନେ କରନ୍ତି, ସେମାନେ ନିର୍ଭୟରେ ନିଶ୍ଚୟ ମୋର ଏହି ଶପଥ ଗ୍ରହଣ କରିବେ । ନ୍ୟାୟ ପଥରେ ଯେଉଁ-ମାନେ ଚାଲୁଛନ୍ତି ବୋଲି ମନେ କରନ୍ତି—ସେମାନେ ଯେପରି ଦ୍ୱିଧାଗ୍ରସ୍ତ ନ ହୁଅନ୍ତି । ତେବେ ଆମ୍ଭମାନଙ୍କର ଜୟ ସୁନିଶ୍ଚିତ ହେବ । ଯଦି ପରିଶେଷରେ ଆମ୍ଭମାନଙ୍କର ପରାଜୟ ଘଟେ, ତାହାହେଲେ କ୍ଷତିନାହିଁ । ବିବେକ ନିକଟରେ ଏବଂ ଆମ୍ଭ ଦେଶ ବିଜୟୀ ସ୍ୱାଧୀନତା ପ୍ରତିଚ୍ଛାୟା ନିକଟରେ ତଥାପି ଆମ୍ଭମାନଙ୍କର ଏହି ସଗର୍ବ ସାନ୍ତ୍ୱନା ରହିବ ଯେ ବୁଦ୍ଧି ଏବଂ ହୃଦୟ ଦ୍ୱାରା ଆମ୍ଭେମାନେ ଯେଉଁ ବ୍ରତ ଗ୍ରହଣ କରିଥିଲେ ଦୁଃଖ, ବନ୍ଧନ, ଯାତନା ଓ ମୃତ୍ୟୁରେ ତାହାକୁ ରକ୍ଷା କରିବାକୁ କୁଣ୍ଠିତ ହୋଇନାହୁଁ ।

## ଧର୍ମ ସମ୍ବନ୍ଧୀୟ ଅଭିମତ

୧୮୪୬ ମସିହାରେ ଲିଙ୍କନ ମାର୍କିଣ ଯୁକ୍ତରାଷ୍ଟ୍ର କଂଗ୍ରେସର ଜଣେ ପ୍ରାର୍ଥୀରୂପେ ପ୍ରତିଦ୍ୱନ୍ଦିତା କରିଥିଲେ—ପରେ ସେ ତାହାର ସଦସ୍ୟ ରୂପେ ନିର୍ବାଚିତ ହେଲେ—ଧର୍ମର ପ୍ରତି ସେ ନାସ୍ତିକ ବୋଲି ଯେଉଁ ଅପବାଦ ତାଙ୍କ ନାମରେ ରଟିଥିଲା, ତାହାର ପ୍ରକାଶ୍ୟ ପ୍ରତିବାଦ ସେ କରିଥିଲେ ।

ସପ୍ତମ ଜିଲ୍ଲା କଂଗ୍ରେସର ଭୋଟରମାନଙ୍କ ପ୍ରତି :

ନାଗରିକ ବନ୍ଧୁଗଣ ;

ମୁଁ ଖ୍ରୀଷ୍ଟଧର୍ମର ଜଣେ ଅବଜ୍ଞାକାରୀ ବୋଲି ଜିଲାର ବିଭିନ୍ନ ସ୍ଥାନରେ ପ୍ରଚାର ହୋଇଅଛି । ମୁଁ କେତେକ ବନ୍ଧୁମାନଙ୍କ ପରାମର୍ଶରେ ବିଷୟଟିକୁ ଏହିଭଳି ଭାବରେ ଆଲୋଚନା କରିବାକୁ ସ୍ଥିର କରିଅଛି । ଏହା ସତ୍ୟ ଯେ, ମୁଁ କୌଣସି ଖ୍ରୀଷ୍ଟୀୟାନ ଚର୍ଚ୍ଚର ସଦସ୍ୟ ନୁହେଁ; କିନ୍ତୁ ମୁଁ କଦାପି କୌଣସି ଧର୍ମ ଶାସ୍ତ୍ରର ସତ୍ୟତା ପ୍ରତି ଅସମ୍ମାନ ପ୍ରଦର୍ଶନ କରିନାହିଁ ; ଏବଂ କୌଣସି ଧର୍ମ ସମ୍ବନ୍ଧରେ କିମ୍ବା ବିଶେଷକରି ଖ୍ରୀଷ୍ଟଧର୍ମ ସମ୍ପ୍ରଦାୟ ପ୍ରତି କୌଣସି ଅସମ୍ମାନଜନକ କଥା କହିନାହିଁ । ଏହା ସତ୍ୟ ଯେ, ବାଲ୍ୟାବସ୍ଥାରେ

ମୁଁ ସ୍ୱତଃପ୍ରବୃତ୍ତ ହୋଇ "Doctrine of Necessity" ନାମକ ତତ୍ତ୍ୱକୁ ବିଶ୍ୱାସ କରିଥିଲି—ତାହାର ଅର୍ଥ ହେଉଛି, ମନୁଷ୍ୟର ମନ କାର୍ଯ୍ୟ କରିବାକୁ ତାଡ଼ନା ପାଏ କିମ୍ବା ବିଶ୍ରାମ ନେବାକୁ କେତେକ ଶକ୍ତି ଦ୍ୱାରା ବାଧ୍ୟ କରାହୁଏ; ଯାହା ଉପରେ ମନର କର୍ତ୍ତୃତ୍ୱ ନାହିଁ । ମୁଁ ବେଳେ ବେଳେ ( ଏକ, ଦୁଇ, କିମ୍ବା ତିନି; କିନ୍ତୁ ସର୍ବସମକ୍ଷରେ ନୁହେଁ ) ଏହି ମତବାଦକୁ ଯୁକ୍ତି ଛଳରେ ବ୍ୟବହାର କରିଛି, ପାଞ୍ଚ ବର୍ଷରୁ ଊର୍ଦ୍ଧ୍ୱ ହେବ ମୁଁ ଏହି ପ୍ରକାର ଯୁକ୍ତି ସମ୍ପୂର୍ଣ୍ଣରୂପେ ପରିତ୍ୟାଗ କରିଅଛି । ମୁଁ ଏଠାରେ ଏତିକି କହିପାରେଁ ଯେ ଅନେକ ଖ୍ରୀଷ୍ଟଧର୍ମ ସଂପ୍ରଦାୟ ବ୍ୟକ୍ତିମାନେ ଏହି ମତ ପୋଷଣ କରିଥାନ୍ତି । ଆଲୋଚ୍ୟ ବିଷୟ ଗୁଡ଼ିକ ହେଉଛି ଘଟଣାର ପ୍ରକୃତ ସତକଥା । ଧର୍ମ ସହିତ ମୋର ସମ୍ପର୍କ ଯାହା ତାହା ମୁଁ ସଂକ୍ଷେପରେ ଆଲୋଚନା କରିଅଛି ।

ଧର୍ମର ଶତ୍ରୁ ଏବଂ ଧର୍ମପ୍ରତି ଅବଜ୍ଞା ଜ୍ଞାପନକାରୀକୁ ସମର୍ଥନ କରିବି ନାହିଁ । ଉଚ୍ଚସ୍ତରର ଶାଶ୍ୱତ ନୀତିର ଫଳକୁ ଅନୁଧାବନକାରୀ ଓ ସୃଷ୍ଟିକର୍ତ୍ତାର ମଧ୍ୟରେ ଛାଡ଼ିଦେଇ ବାସ କରୁଥିବା ସମାଜର କୌଣସି ନୈତିକ ଉପଦେଶ ଗୁଡ଼ିକୁ କ୍ଷତି କରିବା କିମ୍ବା ମନୋଭାବକୁ ଅସମ୍ମାନ ପ୍ରଦର୍ଶନ କରିବା ଅଧିକାର କାହାରି ନାହିଁ । ଯଦି ମୁଁ ପ୍ରକୃତରେ ଦୋଷୀ ବୋଲି ସାବ୍ୟସ୍ତ ହୁଏ ତାହାହେଲେ ଯେ କୌଣସି ଲୋକ ମୋତେ ନିନ୍ଦାକଲେ ମୁଁ ଦୋଷ ଦେବିନାହିଁ; କିନ୍ତୁ ଯେଉଁମାନେ ମିଥ୍ୟାରେ ମୋ ବିରୁଦ୍ଧରେ ଏହି ପ୍ରକାର ଅପପ୍ରଚାର ଚଳାଉଛନ୍ତି, ମୁଁ ସେହିମାନଙ୍କୁହିଁ ଦୋଷ ଦେବି ।

ଏ, ଲିଙ୍କନ

ଜୁଲାଇ ୩୧, ୧୮୪୬

## ଜନୈକ ଆତ୍ମୀୟଙ୍କ ଉପଦେଶ

*ଲିଙ୍କନ ଗୋଟିଏ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ ବୋଲି ସମସ୍ତଙ୍କୁ ଭଲ ଭାବରେ ଜଣା । ଯେତେବେଳେ ସେ ପୃଥିବୀ ସମକ୍ଷରେ ଖୁବ୍, ପ୍ରଭାବଶାଳୀ ହୋଇ ଉଠିଲେ, ସେତେବେଳେ ତାଙ୍କର ଅଦ୍ୟ ଆତ୍ମୀୟସ୍ୱଜନମାନେ ଅଧିକାଂଶ ସମୟରେ ତାଙ୍କର ସାହାଯ୍ୟ ଲୋଡ଼ୁଥିଲେ । ସେ ମଧ୍ୟ ତାଙ୍କର କର୍ତ୍ତବ୍ୟ ଅନୁଯାୟୀ ସାହାଯ୍ୟ କରିବାକୁ କୁଣ୍ଠାବୋଧ କରୁ ନଥିଲେ । ୧୮୪୮ ମସିହାରେ ଯେତେବେଳେ ସେ ୱାସିଂଟନ କଂଗ୍ରେସର ଜନୈକ ସଦସ୍ୟ, ସେତେବେଳେ ସେ ତାଙ୍କର ଜଣେ ଶାଳକଙ୍କ ଅନୁରୋଧକ୍ରମେ ତାହାଙ୍କ ନିକଟକୁ କେତେକ ଉପଦେଶ ପଠାଇଥିଲେ ।*

ବନ୍ଧୁ ଜନ୍‌ଷ୍ଟନ,

ଆପଣଙ୍କ ଅନୁରୋଧ ସତ୍ତ୍ୱେ ଆପଣଙ୍କୁ ୮୦ ଡଲାର ସାହାଯ୍ୟ ଦେବାକୁ ବର୍ତ୍ତମାନ ଉପଯୁକ୍ତ ସମୟ ବୋଲି ମୁଁ ମନେ କରୁନାହିଁ । ଅନେକ ସମୟରେ ଖୁବ୍ ସାମାନ୍ୟ ପରିମାଣରେ ଆପଣଙ୍କୁ ସାହାଯ୍ୟ କରିଅଛି । ଆପଣ ମଧ୍ୟ ମୋତେ କହିଛନ୍ତି, "ବର୍ତ୍ତମାନ ଆମେ ଭଲରେ ଅଛୁ" କିନ୍ତୁ ଅଳ୍ପ ସମୟ ପରେ ସେହି ଅସୁବିଧାର ସମ୍ମୁଖୀନ ହେବାର ମୁଁ ବହୁବାର ଆପଣଙ୍କୁ ଦେଖିଅଛି । ଆପଣଙ୍କ ଚରିତ୍ରର ତ୍ରୁଟି ଯୋଗୁହିଁ ଏହା ସମ୍ଭବ ହୋଇଅଛି । ସେ ତ୍ରୁଟି ଯାହା, ମୁଁ ଜାଣେ । ଆପଣ ସମ୍ପୂର୍ଣ୍ଣରୂପେ ଆଳସ୍ୟ

ପରାଧୀନ ନୁହଁନ୍ତି, ତଥାପି ଅଳସୁଆ। କୌଣସି ଗୋଟିଏ ଦିନ, ଦିନ ତମାମ ପରିଶ୍ରମ କରିବାର, ମୁଁ ଆପଣଙ୍କ ସହିତ ପରିଚିତ ହେବାଦିନ ଠାରୁ ଦେଖିନାହିଁ। ଆପଣ କାର୍ଯ୍ୟ କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ, ତଥାପି ଆପଣ ବିଶେଷ ଭାବରେ କାର୍ଯ୍ୟ କରନ୍ତି ନାହିଁ, ତା'ର କାରଣ ହେଉଛି ସେହି କାର୍ଯ୍ୟରେ ଆପଣ ବିଶେଷ ଭାବରେ ଲାଭବାନ ହେବେନାହିଁ ବୋଲି ଆଶା ରଖି କାର୍ଯ୍ୟ କରନ୍ତି। ଅଯଥା ଉପା-ୟରେ ସମୟ ନଷ୍ଟ କରିବା ସମସ୍ତ ଅସୁବିଧାର ପ୍ରଧାନ କାରଣ; ଏବଂ ଏହି ଅଭ୍ୟାସ ପରିତ୍ୟାଗ କରିବା ଆପଣଙ୍କ ଅପେକ୍ଷା ଆପଣଙ୍କ ସନ୍ତାନ ସନ୍ତତିମାନଙ୍କ ପକ୍ଷରେ ଖୁବ୍ ଦରକାର। ଏମାନଙ୍କ ପକ୍ଷରେ ବିଶେଷ ଦରକାର କାରଣ ସେମାନେ ଦୀର୍ଘ ସମୟ ଜୀବନ ଅତିବାହିତ କରିବେ। ତେଣୁ କାର୍ଯ୍ୟ ଭିତରେ ପଶିବା ପୂର୍ବରୁ ଏହି ଅଭ୍ୟାସ ପରିତ୍ୟାଗ କରିବା ବାଞ୍ଛନୀୟ।

ଆପଣଙ୍କର ବର୍ତ୍ତମାନ (ନଗଦ) ଅର୍ଥ ଦରକାର। ତେଣୁ ମୁଁ ପରାମର୍ଶ ଦେଉଛି, ଆପଣ ଅନ୍ୟଲୋକ ପାଇଁ ଯଥାସାଧ୍ୟ ପରିଶ୍ରମ କରନ୍ତୁ ସେ ଆପଣଙ୍କୁ ଅର୍ଥ ଯୋଗାଇବ। ପିତା ଓ ଆପଣଙ୍କର ଗୃହର ବାଳକ-ମାନେ ଘରର ଦାୟିତ୍ୱ ନିଅନ୍ତୁ—ଫସଲ ପାଇଁ ପ୍ରସ୍ତୁତ ହୁଅନ୍ତୁ ଏବଂ ଫସଲ ଉତ୍ପାଦନ କରନ୍ତୁ। ଆପଣ ଅଧିକ ଉପାର୍ଜନ ପାଇଁ ଯାଆନ୍ତୁ କିମ୍ବା ଅର୍ଜିତ ଅର୍ଥରେ ଋଣ ପରିଶୋଧ କରନ୍ତୁ। ଆପଣଙ୍କ ଶ୍ରମର ଉପଯୁକ୍ତ ପାରିଶ୍ରମିକ ପାଇବାକୁ ହେଲେ ମୁଁ ଆପଣଙ୍କୁ ପ୍ରତିଜ୍ଞା କରୁଛି ଯେ ଆପଣ ଗୋଟିଏ ଡଲାର ଉପାର୍ଜନ କଲେ ମୁଁ ଆପଣଙ୍କୁ ଆଉ ଗୋଟିଏ ଡଲାର ଦେବି। ଏହିପରି ପରିଶ୍ରମ କରି ଆପଣ ଯଦି ମାସକୁ ୧୦ ଡଲାର ରୋଜଗାର କରିବେ ମୁଁ ଆପଣଙ୍କୁ ୧୦ ଡଲାର ଦେବି, ଫଳରେ ଆପଣ ମାସକୁ ୨୦ ଡଲାର ଅର୍ଜନ କରି ପାରିବେ। ମୁଁ କହୁନାହିଁ ଯେ ଅଧିକ ଉପାର୍ଜନ ପାଇଁ ସେଣ୍ଟଲୁଇସ କିମ୍ବା ସୀସାଖଣି କିମ୍ବା କାଲିଫର୍ଣ୍ଣିଆର ସୁନାଖଣିକୁ ଯିବାକୁ। ଘରର ନିକଟବର୍ତ୍ତୀ କୋଲସ (**Coles**) ଦେଶର ଯେକୌଣସି ସ୍ଥାନକୁ ଅଧିକ ଉପାର୍ଜନ ପାଇଁ ଯାଇ ପାରନ୍ତି।

ଆପଣ ଯଦି ଏହିଭଳି ଭାବରେ କାର୍ଯ୍ୟ କରିବେ, ତାହାହେଲେ ଖୁବ୍ ଶୀଘ୍ର ଋଣରୁ ମୁକ୍ତ ହେବେ ଓ ଆପଣ ଏପରି ଏକ ଅଭ୍ୟାସ କରିବେ, ଯେପରି ଆଉ ଋଣଗ୍ରସ୍ତ ହେବେନାହିଁ। କିନ୍ତୁ, ମୁଁ ଯଦି ଆପଣଙ୍କୁ ଏହିବର୍ଷ ଋଣରୁ ମୁକ୍ତ କରେ ଆପଣ ପୁଣି ଆସନ୍ତା ବର୍ଷକୁ ପୂର୍ବାବସ୍ଥାରେ ପହଞ୍ଚିବେ। ଆପଣ କହନ୍ତି ୭୦ କିମ୍ବା ୮୦ ଡଲାର ହେଲେ ଆପଣ ସ୍ୱର୍ଗରାଜ୍ୟ ପାଇବେ। ତାହାହେଲେ ଆପଣଙ୍କ ମତରେ ସ୍ୱର୍ଗରାଜ୍ୟ ଖୁବ୍ ଶସ୍ତା। ମୁଁ ଯେଉଁ ଉପଦେଶ ଦେଇଛି ତାହା ପାଳନ କଲେ ଚାରି କିମ୍ବା ପାଞ୍ଚ ମାସର ଶ୍ରମ ଫଳରେ ଅନାୟାସରେ ୭୦ କିମ୍ବା ୮୦ ଡଲାର ଉପାର୍ଜନ କରି ପାରିବେ। ଆପଣ କହିଛନ୍ତି ମୁଁ ଯଦି ଅର୍ଥ ଯୋଗାଏ ଆପଣ ମୋତେ ଜମି ବନ୍ଧକ କରିଦେବେ ଏବଂ ଟଙ୍କା ପରିଶୋଧ ନକରି ପାରିଲେ ସତ୍ତ୍ୱ ହସ୍ତାନ୍ତର କରିବେ। ଏହା ବୋକାମୀ। ଯଦି ଆପଣ ଜମି ପାଇ ଜୀବିକା ନିର୍ବାହ ନକରି ପାରନ୍ତି, ତାହାହେଲେ ଜମି ବ୍ୟତୀତ କିପରି ନିର୍ବାହ କରିବେ? ଆପଣ ସର୍ବଦା ମୋ ପ୍ରତି ଦୟାପରାୟଣ ହୋଇ-ଛନ୍ତି। ମୁଁ ଆପଣଙ୍କ ପ୍ରତି ନିର୍ଦ୍ଦୟ ହେବାକୁ ଇଚ୍ଛା କରୁନାହିଁ। ଏହା ପରିବର୍ତ୍ତେ ଆପଣ ଯଦି ମୋର ଉପଦେଶ ପାଳନ କରିବେ, ତାହାହେଲେ ୮୦ ଡଲାରର ୮ଗୁଣ ମୂଲ୍ୟର ଉପକାର ପାଇ ପାରିବେ।

ସ୍ନେହାଧୀନ

ତୁମର ଭାଇ

ଏ, ଲିଙ୍କନ



ଆଲେକଜାଣ୍ଡାର ହେସଲର ୧୮୬୦ ମସିହା ଜୁନ୍ ମାସରେ ଲିଙ୍କନଙ୍କର ଏହି ଆବକ୍ଷ ଚିତ୍ରଟି ଅଙ୍କିଥିଲେ। ଠିକ୍ ଏହାର ଏକମାସ ପରେ ଏହି "ମହାନ ମୁକ୍ତିଦାତା"ଙ୍କୁ ତାଙ୍କର ଦଳ ସଭାପତି ପଦ ପାଇଁ ମନୋନୀତ କଲେ।

## ଦାସତ୍ୱ ସମ୍ପର୍କରେ ପ୍ରଥମ ବକ୍ତୃତା

୧୮୫୪ ମସିହାରେ ଦାସତ୍ୱ ସମସ୍ୟା ମାର୍କିଣ ଯୁକ୍ତରାଷ୍ଟ୍ରରେ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ବିଷୟ ହିସାବରେ ଦେଖାଦେଲା । ସେହି ସମୟ ହେଉଛି ପଶ୍ଚିମ ଦିଗରେ ପ୍ରସାର ଯୁଗ । ଏହି ପ୍ରସାରର ସଙ୍ଗେ ସଙ୍ଗେ ଯେଉଁସବୁ ନୂତନ ରାଷ୍ଟ୍ର ଉପନିବେଶରେ ଯୋଗଦାନ କରୁଥିଲେ ମୂଳତଃ ସେହିମାନଙ୍କ ସମ୍ପର୍କରୁ ସମସ୍ୟାଟି ଦେଖା ଦେଇଥିଲା । ପରବର୍ତ୍ତୀ ସମୟରେ ଲିଙ୍କନଙ୍କର ପ୍ରବଳତମ ପ୍ରତିଦ୍ୱନ୍ଦ୍ୱୀ ସିନେଟର ଷ୍ଟିଫେନ ଓ ଡଗଲସଙ୍କର ବକ୍ତୃତାର ଉତ୍ତରରେ ୧୮୫୪ ମସିହା ଅକ୍ଟୋବର ମାସରେ ଇଲିୟନସ ଅନ୍ତର୍ଗତ ପେଓରିଆ ( Peoria ) ନାମକ ସ୍ଥାନରେ ସେ ଯେଉଁ ବକ୍ତୃତା କରିଥିଲେ ତାହା ପ୍ରଥମ ଉଲ୍ଲେଖ-ଯୋଗ୍ୟ ବକ୍ତୃତା ଅଟେ । ଡଗଲସ ପ୍ରଥମେ ବକ୍ତୃତା ଦେଲେ । ତାଙ୍କପରେ ଲିଙ୍କନ ମଧ୍ୟ ପ୍ରାୟ ୩ ଘଣ୍ଟାରୁ ଅଧିକ ସମୟ ବକ୍ତୃତା ଦେଇଥିଲେ । ଉଦ୍ଧୃତାଂଶ ମଧ୍ୟରେ ଏ ବିଷୟ ସମ୍ପର୍କରେ ତାଙ୍କର ମୂଳ ମତବାଦର ପରିଚୟ ମିଳେ ।

"ଦକ୍ଷିଣାଂଶ ପ୍ରତି ସମ-ଆଚରଣ" ବୋଲିଲେ ନୂତନ ଦେଶ ସମୂହରେ କ୍ରୀତଦାସ-ପ୍ରଥା ବିସ୍ତାରିତ ହେବାଲାଗି ଆମ୍ଭମାନଙ୍କୁ ସମ୍ମତି ଦେବା କର୍ତ୍ତବ୍ୟ ବୋଲି କୁହାଯାଏ । ଏହାର ଅର୍ଥ ହେଉଛି ଏହି ଯେ ମୁଁ ମୋର ଶୂକରଟି ନେବ୍ରାସ୍କା ନେଇଗଲେ ଆପଣ ଯେପରି ଆପତ୍ତି କରନ୍ତି ନାହିଁ, ଆପଣ ଆପଣଙ୍କ କ୍ରୀତଦାସକୁ ନେଇଗଲେ ମୋର ଆପତ୍ତି କରିବା ଉଚିତ ନୁହେଁ । ଯଦି ଶୂକର ଓ ନିଗ୍ରୋମାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନଥାଏ, ତାହାହେଲେ ଏହି ଯୁକ୍ତିରେ ଯେ କୌଣସି ଦୋଷନାହିଁ ଏହା ସ୍ୱୀକାର କରିବାକୁ ହେବ । ଏହିଭଳି ଭାବରେ ନିଗ୍ରୋମାନଙ୍କର ମାନବତାକୁ ଅସ୍ୱୀକାର କରିବାକୁ ଆପଣମାନେ ଯଦି ଆମ୍ଭମାନଙ୍କୁ ବାଧ୍ୟ କରିବେ, ତେବେ ଆପଣଙ୍କ ମଧ୍ୟରୁ ଯେଉଁମାନେ ଦକ୍ଷିଣରେ ବାସ କରନ୍ତି ମୁଁ ସେମାନଙ୍କୁ ପ୍ରଶ୍ନ କରିବି, ଆପଣମାନେ କେବେ କ'ଣ ତାହା କହିଛନ୍ତି କି ? ଭଗବାନଙ୍କ କରୁଣାରେ, ପୃଥିବୀରେ ଯେଉଁମାନେ ଜନ୍ମଗ୍ରହଣ କରନ୍ତି ସେମାନଙ୍କ ମଧ୍ୟରୁ ମୁଷ୍ଟିମେୟ କେତେକ ଲୋକ ସ୍ୱଭାବତଃ-ନୃଶଂସ ହୋଇ ଥାଆନ୍ତି । ସ୍ୱାଧୀନ ରାଷ୍ଟ୍ର ଅପେକ୍ଷା ଦାସ ରାଷ୍ଟ୍ରରେ ସେମାନଙ୍କର ଶତକଡ଼ା ହାର ଅଧିକ ନୁହେଁ । ଉତ୍ତର ଅଞ୍ଚଳରେ କିମ୍ବା ଦକ୍ଷିଣ ଅଞ୍ଚଳରେ ବାସ କରି ପାରନ୍ତି, କିନ୍ତୁ ଜନସାଧାରଣଙ୍କ ମଧ୍ୟରୁ ଅଧିକାଂଶଙ୍କର ମାନବିକ ସହାନୁଭୂତିବୋଧ ରହିଛି—ଦୈହିକ ଯନ୍ତ୍ରଣାରୁ ସେମାନେ ଯେପରି ତ୍ରାହି ପାଇ-ପାରିବେ ନାହିଁ ସେହିପରି ଭାବରେ ଏହି ସହାନୁଭୂତିବୋଧକୁ ମଧ୍ୟ କାଟିଦେଇ ପାରିବେ ନାହିଁ । ଦକ୍ଷିଣାଞ୍ଚଳର ଲୋକସମୂହ ଏହି ପ୍ରକୃତିଗତ ସହାନୁଭୂତିବୋଧତା ହେତୁ ଦାସ-ପ୍ରଥାକୁ ଅନ୍ୟାୟ ବୋଲି ମନେ କରନ୍ତି ଏବଂ ନିଗ୍ରୋମାନଙ୍କ ମଧ୍ୟରେ ଯେ ମାନବତା ରହିଅଛି, ଏ ବିଷୟରେ ସେମାନେ ସଚେତନ । ଯଦି ଏକଥା ସେମାନେ ଅସ୍ୱୀକାର କରିବେ, ମୁଁ ସେମାନଙ୍କୁ କେତୋଟି ସହଜ ପ୍ରଶ୍ନ ପଚାରିବି—୧୮୨୦ ମସିହାରେ ଆପଣମାନେ ଉତ୍ତରାଞ୍ଚଳ ଲୋକମାନଙ୍କ ସହିତ ଏକବାକ୍ୟରେ ସମ୍ମିଳିତ ଭାବରେ ଘୋଷଣା କରିଛନ୍ତି ଯେ, ଆଫ୍ରିକାରୁ ଦାସମାନଙ୍କୁ ଆଣି ବ୍ୟବସାୟ କରିବା ଜଳଦସ୍ୟୁତା ସହିତ ସମାନ ଏବଂ ସେମାନଙ୍କର ସମୁଚିତ ଶାସ୍ତି ମୃତ୍ୟୁଦଣ୍ଡ । ଆପଣମାନେ କାହିଁକି ଏହା କରିଥିଲେ ? ଯଦି ଆପଣମାନେ ଏହାକୁ ଅନ୍ୟାୟ ବୋଲି ମନେକରି ନଥାଆନ୍ତେ, ତାହାହେଲେ କେଉଁ କାରଣରୁ ଏଥିପାଇଁ ମନୁଷ୍ୟମାନଙ୍କୁ ଫାଶୀ କାଠିରେ

ଝୁଲାଇବାର ବିଧାନ ପ୍ରଣୟନ କରିବାକୁ ଐକ୍ୟବଦ୍ଧ ହୋଇଥିଲେ ? ଏହି ପ୍ରଥା ଫଳରେ ଆଫ୍ରିକାରୁ ବନ୍ୟ ନିଗ୍ରୋମାନଙ୍କୁ ଆଣି କେତେକ ବ୍ୟକ୍ତିମାନଙ୍କ ନିକଟରେ ବିକ୍ରୟ କରିବା ବ୍ୟତୀତ ଅନ୍ୟ କିଛି କରି ହେଉ ନଥିଲା । କିନ୍ତୁ ବନ୍ୟ ଅଶ୍ୱ, ବନ୍ୟ ମହିଷ ବା ବନ୍ୟ ଭଲ୍ଲୁକ ଧରିଆଣି ବିକ୍ରି କରିବା ଯୋଗୁଁ କାହାରିକୁ ଫାଶୀଦେବା କଥା ଚିନ୍ତା କରାଯାଇ ନଥିଲା ।

ପୁଣି ଆପଣମାନଙ୍କ ମଧ୍ୟରୁ ଦେଶୀୟ ଦୁରାତ୍ମାମାନଙ୍କ ଭଳି ଗୋଟିଏ ଦଳ ଅଛି ଯେଉଁମାନେ "ଦାସ-ବ୍ୟବସାୟୀ" ନାମରେ ପରିଚିତ ଅଟନ୍ତି । ସେ ଆପଣମାନଙ୍କର ଅଭାବ ପ୍ରତି ଦୃଷ୍ଟି ରଖନ୍ତି ଏବଂ ଅତର୍କିତ ଭାବରେ ଅଳ୍ପ ମୂଲ୍ୟରେ ଆପଣଙ୍କର ଭୃତ୍ୟକୁ ଖରିଦ କରିବାକୁ ଆସି ପହଞ୍ଚନ୍ତି । ଅଭାବ ନ ମେଣ୍ଟାଇ ପାରିଲେ ତାହା ନିକଟରେ ଆପଣଙ୍କର ଦାସକୁ ବିକ୍ରି କରନ୍ତି—ନଚେତ୍ ନିଜ ଗୃହର ଦରଜାରୁ ତାହାକୁ ଅନ୍ୟ ଗୃହକୁ ବିତାଡ଼ିତ କରନ୍ତି । ଆପଣମାନେ ତାହାକୁ ଭୀଷଣ ଭାବରେ ଘୃଣା କରନ୍ତି । ଏପରିକି ତାହାକୁ ବନ୍ଧୁ କିମ୍ବା ସତ-ଲୋକ ବୋଲି ମନେ କରନ୍ତି ନାହିଁ । ଆପଣ ମାନଙ୍କର ସନ୍ତାନ ମାନଙ୍କୁ ତାହାର ସନ୍ତାନମାନଙ୍କ ସହିତ ଖେଳିବାକୁ ଅନୁମତି ଦିଅନ୍ତି ନାହିଁ । ସେମାନେ କ୍ଷୁଦ୍ରକାୟ ନିଗ୍ରୋ-ମାନଙ୍କ ସହିତ ଫୁର୍ତ୍ତି କରି ବୁଲି ପାରନ୍ତି, କିନ୍ତୁ "କ୍ରୀତଦାସ-ବ୍ୟବସାୟୀ" ସନ୍ତାନମାନଙ୍କ ସହିତ ସେମାନଙ୍କର ଖେଳ ବନ୍ଦ । ତାହା ସହିତ ଯଦି ଆପଣମାନଙ୍କର ଆଦାନ ପ୍ରଦାନର ପ୍ରୟୋଜନ ହୁଏ ତାହେଲେ ଆପଣମାନେ ଯଥା ସମ୍ଭବ ତାକୁ ସ୍ପର୍ଶ ନକରି କାର୍ଯ୍ୟ ଶେଷ କରିବାକୁ ଚେଷ୍ଟା କରନ୍ତି । ସାକ୍ଷାତ ହେଲେ ସମ୍ଭବତଃ ଆପଣଙ୍କ ଲୋକମାନଙ୍କ ସହିତ କରମର୍ଦ୍ଦନ କରନ୍ତି—କିନ୍ତୁ ଦାସ-ବ୍ୟବସାୟୀ ସ୍ଥଳରେ ଏହାକୁ ଏଡ଼ି ଯିବାକୁ ଚେଷ୍ଟା କରନ୍ତି—ସର୍ପିଳ ସ୍ପର୍ଶରୁ ବଞ୍ଚିବାପାଇଁ ଆପଣମାନଙ୍କ ଶରୀର ସଂକୁଚିତ ହୋଇ ଆସେ । ଯଦି ସେ ଧନବାନ ହୋଇ ବ୍ୟବସାୟ ପରିତ୍ୟାଗ କରେ, ତଥାପି ଆପଣମାନେ ତାହାର ସେହି ଅତୀତ କଥା ସ୍ମରଣ ରଖି ତେତେବେଳେ ତାହା ସହିତ ଏବଂ ତାହାର ପରିବାରବର୍ଗ ସହିତ ସମ୍ପର୍କର ନିଷେଧାଜ୍ଞା ବଜାୟ ରଖନ୍ତି । କାହିଁକି ଏପରି କରନ୍ତି ? ଏପରିକି ଯେ ବ୍ୟକ୍ତି ଶସ୍ୟ, ଗୋରୁ ଅଥବା ତମାଖୁ ବିକ୍ରି କରେ ତାହା ସହିତ ଆପଣମାନେ ଏପରି ବ୍ୟବହାର କରନ୍ତି ନାହିଁ । ଅଥଚ ଦେଖନ୍ତୁ, ମାର୍କିଣ ଯୁକ୍ତରାଷ୍ଟ୍ର ଏବଂ କଲମ୍ବିୟା ଜିଲା ସହିତ ସବୁ ଅଞ୍ଚଳରେ ୪୩୩,୬୪୩ ଜଣ ସ୍ୱାଧୀନ କୃଷ୍ଣକାୟ ବ୍ୟକ୍ତି ଅଛନ୍ତି । ମୁଣ୍ଡପିଛା ୫୦୦ ଡଲାର ହିସାବରେ ସେମାନଙ୍କର ମୂଲ୍ୟ ହେଲେ କୋଡ଼ିଏ କୋଟି ଡଲାର ହେବ । ଏହି ବିପୁଳ ସମ୍ପଦ କିପରି ଭାବରେ ମାଲିକଙ୍କ ବ୍ୟତୀତ ଘୁରି ବୁଲୁଛି ? ଘୋଡ଼ା ଏବଂ ଗୋରୁ ମହିଷ ମାନଙ୍କୁ ଏପରି ସ୍ୱାଧୀନ ଭାବରେ ଭ୍ରମଣ କରୁଥିବାର ଦେଖାଯାଏ ନାହିଁ । କାହିଁକି ? ଏହି କୃଷ୍ଣକାୟ ସ୍ୱାଧୀନ ବ୍ୟକ୍ତିମାନେ ନିଜେ, କିମ୍ବା ସେମାନଙ୍କର ପୂର୍ବ ପୁରୁଷଗଣ ଦାସଥିଲେ; ଏବଂ ପ୍ରଚୁର ଆର୍ଥିକ କ୍ଷତି ସତ୍ତ୍ୱେ, ତଥାପି ସେମାନେ ବର୍ତ୍ତମାନ ଦାସ ହୋଇ ରହି ଥାଆନ୍ତେ ଯଦି, ସେମାନଙ୍କ ଶ୍ୱେତକାୟ ସତ୍ତ୍ୱାଧିକାରୀମାନଙ୍କ ଉପରେ ଦାସ ମାନଙ୍କର ମୁକ୍ତି ପାଇଁ କୌଣସି ଗୋଟିଏ ବିଶେଷ ଜିନିସର ପ୍ରଭାବ ବିସ୍ତାର କରାହୋଇ ନଥାନ୍ତା । ସେହି ବିଶେଷ ଜିନିସଟି କ'ଣ ? ଏ ବିଷୟରେ କୌଣସି ଭ୍ରାନ୍ତି ଅଛି କି ? ଏହିସବୁ କ୍ଷେତ୍ରରେ ଆପଣମାନଙ୍କର ନ୍ୟାୟ-ବୋଧତା ଏବଂ ମାନବିକ ସହାନୁଭୂତି ଆପଣମାନଙ୍କୁ ଶିକ୍ଷା ଦେଇଛି ଯେ ହତଭାଗ୍ୟ ନିଗ୍ରୋମାନଙ୍କର ମଧ୍ୟ ନିଜସ୍ୱ ଗୋଟିଏ ଜନ୍ମଗତ ଅଧିକାର ରହିଅଛି, ଏବଂ ଯେଉଁମାନେ ତାକୁ ଅସ୍ୱୀକାର କରି ସେମାନଙ୍କୁ ସାମାନ୍ୟ ପଣ୍ୟ ଦ୍ରବ୍ୟରେ ପରିଣତ କରନ୍ତି, ସେମାନଙ୍କର ଉପଯୁକ୍ତ ପ୍ରାପ୍ୟ ହେଉଛି ପଦାଘାତ, ଘୃଣା ଏବଂ ମୃତ୍ୟୁ ।

ତାହାହେଲେ ଆପଣମାନେ କାହିଁକି ବର୍ତ୍ତମାନ ଦାସମାନଂକର ମାନବତା ଅସ୍ୱୀକାର କରି ସେମାନଂକୁ ଶୂକରମାନଂକ ସହିତ ସମତୁଲ୍ୟ କରିବାକୁ ଆମ୍ଭମାନଂକୁ ପଚାରୁଛନ୍ତି ? ଆପଣମାନେ ନିଜେ ଯାହା

ନକରିବେ ତାହାକୁ ଆମ୍ଭମାନଙ୍କୁ କରିବାକୁ କହୁଛନ୍ତି । କୋଡ଼ିଏ କୋଟି ଡଲାର ଲୋଭରେ ଆପଣମାନେ ଯାହା କରିବାକୁ ସମ୍ମତ ହୁଅନ୍ତି ନାହିଁ, ଆମ୍ଭମାନଙ୍କୁ ତାହା ବିନା ମୂଲ୍ୟରେ କରିବାକୁ କହୁଛନ୍ତି ?

ମିଜୁରି ଚୁକ୍ତି (**Missouri Compromise**) ପ୍ରତ୍ୟାହାର ସପକ୍ଷରେ ପ୍ରଧାନ ଯୁକ୍ତି ବର୍ତ୍ତମାନ ସୁଦ୍ଧା ଦିଆ ଯାଇନାହିଁ । ସେହି ଯୁକ୍ତି ହେଉଛି "ସ୍ୱାୟତ୍ତ ଶାସନର ପବିତ୍ର ଅଧିକାର ।" ମନେହୁଏ ସିନେଟ୍‌ରେ ଆମ୍ଭମାନଙ୍କର ମାନନୀୟ ସିନେଟ୍‌ର ତାଙ୍କର ପ୍ରତିଦ୍ୱନ୍ଦୀମାନଙ୍କୁ ଏହି ଯୁକ୍ତିରେ ପ୍ରବର୍ତ୍ତାଇବାକୁ ବିଶେଷ ଅସୁବିଧାର ସମ୍ମୁଖୀନ ହୋଇଥିଲେ । କୌଣସି ଜଣେ କବି କହିଛନ୍ତି,

"ଦେବଦୂତଗଣ ଯେଉଁ ସ୍ଥାନରେ ପଦକ୍ଷେପ କରିବାକୁ ଭୟ ପାଆନ୍ତି, ନିର୍ବୋଧମାନେ ସେଠାକୁ ଯିବାକୁ ସାହସ କରନ୍ତି ।"

ମୋତେ ହୁଏତ ଉକ୍ତ ନିର୍ବୋଧ ଭଳି ମନେ କରି ପାରନ୍ତି, ତଥାପି ମୁଁ ଏହି ଯୁକ୍ତିର ଉତ୍ତର ଦେଉଛି—ଏବଂ ଆଗଭର ହୋଇ ସମସ୍ୟାର ସମ୍ମୁଖୀନ ହୋଇଛି । ମୋର ବିଶ୍ୱାସ ସ୍ୱାୟତ୍ତଶାସନର ଅଧିକାର କ'ଣ ମୁଁ ଜାଣେ ଏବଂ ଯଥାର୍ଥ ମୂଲ୍ୟଦିଏ । ମୋର ନ୍ୟାୟବୋଧ ମୂଳରେ ଏହି ପ୍ରତିଜ୍ଞା ପ୍ରତି ବିଶ୍ୱାସ ଅଛି ଯେ, ନିଜ ବ୍ୟାପାରରେ ମୋର ନିଜର ଖୁସୀ ଅନୁଯାୟୀ କାର୍ଯ୍ୟ କରିବାର ଅଧିକାର ଅଛି । ସମଷ୍ଟି ଓ ବ୍ୟଷ୍ଟି, ଉଭୟ କ୍ଷେତ୍ରରେ ଏହି ନୀତି ମୁଁ ମାନି ଚଳେ । ମୁଁ ଏହିପରି କରେ, କାରଣ ତାହା ରାଜନୈତିକ ବିଚାରରେ ସମୀଚୀନ ଏବଂ ସ୍ୱାଭାବତଃ ନ୍ୟାୟ । ରାଜନୈତିକ ଦିଗରୁ ଏହି କାରଣରୁ ସମୀଚୀନ ଯେ ତାହା ଅନେକ ଅନାବଶ୍ୟକ କଳହ ନିବୃତ୍ତ କରେ । ଏଠାରେ ଅଥବା ଓ୍ୱାସିଂଟନରେ ମୁଁ କେବେହେଲେ ଭର୍ଜିନୀୟାର (**Oyster**) ଆଇନ କିମ୍ବା ଇଣ୍ଡିୟାନାର ଲାଲଜାମୁ (**Cranberry**) ଆଇନ ସମ୍ବନ୍ଧରେ ମୁଣ୍ଡ ଖେଳାଏ ନାହିଁ ।

ସ୍ୱାୟତ୍ତଶାସନର ଅନୁଶାସନ ନୀତି ସଠିକ୍ ସମ୍ପୂର୍ଣ୍ଣରୂପେ ଏବଂ ଚିରକାଳ ପାଇଁ ଏହା ସଠିକ୍; କିନ୍ତୁ ଏହାର ସଠିକ୍ ପ୍ରୟୋଗ ହୁଏନାହିଁ । ବରଂ ଆମ୍ଭେମାନେ କହିବା ଉଚିତ୍ ଯେ ଏହାର ପ୍ରୟୋଗ ସଠିକ୍ ହୋଇଅଛି କି ନାହିଁ ତାହା ନିର୍ଭର କରେ ନିଗ୍ରୋମାନେ ମନୁଷ୍ୟ କି ନା ତାହାର ସିଦ୍ଧାନ୍ତ ଉପରେ । ଯଦି ସେ ମନୁଷ୍ୟ ନ ହୁଏ, ସେ କ୍ଷେତ୍ରରେ କାହିଁକି ପ୍ରୟୋଗ ହେବ । ଯେଉଁ ବ୍ୟକ୍ତି ମନୁଷ୍ୟ ସେ ତାହାର ସହିତ ସ୍ୱାୟତ୍ତ ଶାସନର ନୀତି ଖୁସୀ ଅନୁଯାୟୀ ବ୍ୟବହାର କରିବ ? କିନ୍ତୁ ଯଦିଓ ନିଗ୍ରୋ ମନୁଷ୍ୟ ହୁଏ, ତେବେ ସେ ନିଜକୁ ପରିଚାଳନା କରି ପାରିବ ନାହିଁ, ମୋ କହିବାର ଅର୍ଥ କ'ଣ ସ୍ୱାୟତ୍ତଶାସନ ପୂର୍ଣ୍ଣ ବିଲୋପର ନାମାନ୍ତର ନୁହେଁ ? ଯେତେବେଳେ ଶ୍ୱେତକାୟ ବ୍ୟକ୍ତି ନିଜକୁ ପରିଚାଳନା କରେ— ସେତେବେଳେ ତାହାର ନାମ ସ୍ୱାୟତ୍ତଶାସନ; କିନ୍ତୁ ଯେତେବେଳେ ସେ ନିଜକୁ ପରିଚାଳନା କରିବା ସଙ୍ଗେ ସଙ୍ଗେ ଅନ୍ୟ ଏକଜଣଙ୍କୁ ଶାସନ କରେ, ସେତେବେଳେ ତାହା ସ୍ୱାୟତ୍ତଶାସନ ଠାରୁ ସମ୍ପୂର୍ଣ୍ଣ ଭିନ୍ନ— ତାହା ସ୍ୱେଚ୍ଛାଚାର । ଯଦି ନିଗ୍ରୋ ମନୁଷ୍ୟ ହୁଏ, ତେବେ ଦେଶର ସନାତନ ବିଶ୍ୱାସ ମତବାଦ ଅନୁସାରେ ମୁଁ ଜାଣେ ଯେ, "ସକଳ ମନୁଷ୍ୟ ସମଭାବେ ସୃଷ୍ଟି ହୋଇଅଛନ୍ତି" ଏବଂ କ୍ରୀତଦାସ କରିବାର ନୈତିକ ଅଧିକାର କାହାର ନାହିଁ । ବିଚାରକ ଡଗଲାସ ଆମ୍ଭମାନଙ୍କର ଯୁକ୍ତିକୁ ବରାବର ତୀବ୍ର ବ୍ୟଙ୍ଗ ଏବଂ ବିଦ୍ରୂପ କରି କହନ୍ତି; "ନେବ୍ରାସ୍କାର ଶ୍ୱେତକାୟ ବ୍ୟକ୍ତିମାନେ ନିଜ ନିଜର ବିଷୟ ପରିଚାଳନାରେ ପୁଷ୍ଟ; କିନ୍ତୁ ମୁଷ୍ଟିମେୟ ଘୃଣ୍ୟ ନିଗ୍ରୋମାନଙ୍କୁ ଶାସନ କରିବାର କର୍ତ୍ତବ୍ୟ ସେମାନଙ୍କର ନାହିଁ ।"

ପ୍ରକୃତରେ ମୁଁ ନିଃସନ୍ଦେହ ଯେ ଅନ୍ୟ ସ୍ଥାନର ସାଧାରଣ ଲୋକମାନଙ୍କ ଭଳି ନେବ୍ରାସ୍କାର ଜନସାଧାରଣ ସମାନ କ୍ଷମତାରେ ଅଧିକାରୀ ଏବଂ ସେହି କ୍ଷମତା ଚିରକାଳହିଁ ରହିବ । ମୁଁ ଏହାର ବିରୁଦ୍ଧରେ

କହୁନାହିଁ । ମୋର ବକ୍ତବ୍ୟ ଏହି ଯେ, କୌଣସି ମନୁଷ୍ୟ ଅନ୍ୟର ସମ୍ମତି ବ୍ୟତୀତ ତାହାକୁ (ଅର୍ଥାତ୍ ସେହି ଅପର ଲୋକକୁ) ଶାସନ କରିବାକୁ ଉପଯୁକ୍ତ ହୋଇ ପାରେନାହିଁ । ମୁଁ କହେ, ଏହା ହେଉଛି ସର୍ବଶ୍ରେଷ୍ଠ ନୀତି—ମାର୍କିଣ ସାଧାରଣତନ୍ତ୍ର ବାଦର ମୂଳଭିତ୍ତି । ଆମ୍ଭମାନଙ୍କର ସ୍ୱାଧୀନତା ଘୋଷଣା ପତ୍ରରେ କୁହା ଯାଇଛି ।

"ଆମ୍ଭେମାନେ ଏହି ସତ୍ୟଗୁଡ଼ିକୁ ସ୍ୱତଃସିଦ୍ଧ ବୋଲି ମନେକରୁ ; ଯେଉଁ ଲୋକମାନେ ସମଭାବରେ ସୃଷ୍ଟି ହୋଇଛନ୍ତି ; ସ୍ରଷ୍ଟା ସେମାନଙ୍କୁ କେତେ ଗୁଡ଼ିଏ ଜନ୍ମଗତ ଅଧିକାର ଦ୍ୱାରା ମଣ୍ଡିତ କରିଅଛନ୍ତି । ସେହି ଅଧିକାର ଗୁଡ଼ିକ ମଧ୍ୟରେ ରହିଅଛି ଜୀବନ, ସ୍ୱାଧୀନତା ଏବଂ ସୁଖସ୍ୱାଚ୍ଛନ୍ଦ୍ୟର ଅଧିକାର । ଏହି ଅଧିକାର ଗୁଡ଼ିକୁ ସୁରକ୍ଷିତ କରିବା ପାଇଁ ମନୁଷ୍ୟ ସରକାର ପ୍ରତିଷ୍ଠା କରେ ଏବଂ ଶାସିତମାନଙ୍କର ସମ୍ମତି ହେଉଛି ସରକାରର ନ୍ୟାଯ୍ୟ କ୍ଷମତାର ଭିତ୍ତି ।"

ଏହି ଦୀର୍ଘ ଉଦ୍ଧୃତାଂଶର ଉଦ୍ଦେଶ୍ୟ ମଧ୍ୟରେ ଦେଖାଦିଏ ଯେ ଆମ୍ଭମାନଙ୍କର ସନାତନ ବିଶ୍ୱାସ ଅନୁଯାୟୀ ସରକାରର କ୍ଷମତା ଶାସିତମାନଙ୍କ ସମ୍ମତିରୁ ଆସେ । ବର୍ତ୍ତମାନ ପ୍ରଭୁ ଏବଂ ଦାସର ସମ୍ପର୍କ, ତଦନୁପାତରେ, ଏହି ନୀତିର ସମ୍ପୂର୍ଣ୍ଣ ବିରୋଧୀ । ପ୍ରଭୁ ଯେ କେବଳ ଦାସର ସମ୍ମତି ବ୍ୟତୀତ ଶାସନ କରେ ତାହାନୁହେଁ, ଯେଉଁ ନିୟମାବଳୀ ଦ୍ୱାରା ସେ ନିଜେ ପରିଚାଳିତ ହୁଏ, ଦାସକୁ ସମ୍ପୂର୍ଣ୍ଣ ଭିନ୍ନ ଧରଣ ନୀତି ଅନୁଯାୟୀ ଶାସନ କରେ । ସରକାର ଶାସନରେ ସମସ୍ତ ଶାସକଙ୍କୁ ସମାନ ସୁଯୋଗ ଦେଲେ; ତାହାହିଁ ହେବ ସ୍ୱାୟତ୍ତ ଶାସନ । ଯେପରି ଏ କଥା ନହୁଏ ଯେ, ମୁଁ ଶ୍ୱେତକାୟ ଏବଂ କୃଷ୍ଣକାୟମାନଙ୍କ ମଧ୍ୟରେ ରାଜନୈତିକ ଏବଂ ସାମାଜିକ ସାମ୍ୟ ପ୍ରତିଷ୍ଠା ପାଇଁ ଯୁକ୍ତି କରୁଅଛି । ପୂର୍ବରୁ ମୁଁ ଏହା ଖଣ୍ଡନ କରିଅଛି । କୃଷ୍ଣକାୟ ବ୍ୟକ୍ତିଗୁଡ଼ିକ ବର୍ତ୍ତମାନ ଆମ୍ଭମାନଙ୍କ ମଧ୍ୟରେ—ଉଦ୍ଭୂତ ପ୍ରୟୋଜନ ବିଷୟନାମକ ପ୍ରଶ୍ନର ବିପକ୍ଷରେ ମୁଁ ଯୁକ୍ତି କରୁନାହିଁ । ମୁଁ କେବଳ ସେହି ତଥାକଥିତ ନୈତିକ ଯୁକ୍ତିର ଗୋଟିଏ ଅନ୍ୟାୟ ଜିନିଷର ପ୍ରସାର ଯୋଗୁଁ ବିରୋଧିତା କରୁଅଛି— । ଯେଉଁଠାରେ ବର୍ତ୍ତମାନ ଏହାର ପ୍ରଚଳନ ଅଛି, ସେଠାରେ ବାଧ୍ୟହୋଇ ଆମ୍ଭମାନଙ୍କୁ ସେ ବିଷୟରେ ଯଥାସାଧ୍ୟ ବ୍ୟବସ୍ଥା କରିବାକୁ ହେବ ।

## ଦାସ ପ୍ରଥା ସମ୍ବନ୍ଧରେ ଜଣେ ବନ୍ଧୁଙ୍କୁ ପତ୍ର

୧୮୫୫ ମସିହା-ଅଗଷ୍ଟ ମାସରେ ଲିଙ୍କନ ତାଙ୍କର ଜଣେ ପୁରୁଣା ବନ୍ଧୁଙ୍କୁ ଗୋଟିଏ ବ୍ୟକ୍ତିଗତ ପତ୍ରରେ ଦାସପ୍ରଥା ସଂବନ୍ଧରେ ତାଙ୍କର ମତବାଦ ଜଣାଇ ଥିଲେ ।

ସ୍ପ୍ରିଂ ଫିଲ୍ଡ ଅଗଷ୍ଟ ୨୪, ୧୮୫୫

ପ୍ରିୟ ସ୍ପିଡ,

ମୁଁ ଚିଠି ଲେଖାରେ କେତେ ଦୂର ଅପରାଗ ତୁମେ ଜାଣ । ତୁମର ମେ ୨୨ ତାରିଖର ସୁନ୍ଦର ଚିଠି ଖଣ୍ଡ ପାଇସାରିବା ପରେ ମୁଁ ଉତ୍ତର ଦେବ ବୋଲି ଭାବୁଛି । ତୁମେ କହିବାକୁ ଚାହୁଁଛ ଯେ ବର୍ତ୍ତମାନଠାରୁ ରାଜନୈତିକ କାର୍ଯ୍ୟକ୍ରମରେ ତୁମ ଏବଂ ମୋଠାରେ ପାର୍ଥକ୍ୟ ଦେଖା ଦେବ । ମୋର ମନେହୁଏ, ହୁଏତ ତାହାହିଁ ହେବ—ତେବେ ତୁମେ ଯେତିକି ଭାବୁଛ ସେତିକି ହେବ ବୋଲି ମନେ କରୁନାହିଁ । ତୁମେ ଜାଣ

ମୁଁ ଦାସ ପ୍ରଥାକୁ ଅପସନ୍ଦ କରେ, ଏବଂ ବାସ୍ତବ ଦୃଷ୍ଟିରେ ତୁମେ ବି ମଧ୍ୟ ଏହାର ଭୁଲ୍ ସ୍ୱୀକାର କର । ଏ ପର୍ଯ୍ୟନ୍ତ ମତାନ୍ତରର କୌଣସି କାରଣ ନାହିଁ । ତୁମେ କୁହ ଯେ କ୍ରୀତଦାସର ନିକଟରେ-ବିଶେଷ ଭାବରେ ଏ ବିଷୟରେ ଯେଉଁମାନଙ୍କର ସମ୍ପର୍କ ନାହିଁ, ସେମାନଙ୍କ ନିର୍ଦ୍ଦେଶରେ ତୁମର ଆଇନଗତ ଅଧିକାର ସମର୍ପଣ କରିବା ଅପେକ୍ଷା ତୁମେ ଇଉନିୟନର ବିଲୋପ ସାଧନ କାମନା କର । କୌଣସି ଲୋକ ତୁମକୁ ସେହି ଅଧିକାର ସମର୍ପଣ ପାଇଁ ଆଦେଶ କରୁଅଛି ବୋଲି ମୁଁ ମନେ କରେ ନାହିଁ, ଏକଥା ସୁନିଶ୍ଚିତ ଯେ ମୁଁ ମଧ୍ୟ ସେହିପରି ଆଦେଶ ଦେଉନାହିଁ । ମୁଁ ବିଷୟଟିକୁ ତୁମ ଉପରେ ସମ୍ପୂର୍ଣ୍ଣରୂପେ ଛାଡ଼ିଦେଉଛି । ସମ୍ବିଧାନ ଅନୁଯାୟୀ ତୁମର କ୍ରୀତଦାସମାନଙ୍କ ସମ୍ପର୍କରେ ତୁମର ଅଧିକାର ଏବଂ ତୁମର କର୍ତ୍ତବ୍ୟ ମଧ୍ୟ ମୁଁ ସ୍ୱୀକାର କରେ । ମୁଁ ସ୍ୱୀକାର କରେ ଯେ, ଏହି ହତଭାଗ୍ୟ ଜୀବଗୁଡ଼ିକଙ୍କୁ ବିତାଡ଼ିତ, ଧୃତ ଓ ବେତ୍ରାଘାତ ଅବସ୍ଥାରେ ଦେଖିଲେ ମୁଁ ଘୃଣା ବୋଧକରେ, ମୁଁ ଓଠ କାମୁଡ଼ି ନୀରବ ରୁହେ । ୧୮୪୧ ମସିହାରେ ତୁମେ ଏବଂ ମୁଁ ଏକସଙ୍ଗରେ ଲୁଇଭିଲ ଠାରୁ ସେଣ୍ଟଲୁଇ ପର୍ଯ୍ୟନ୍ତ ଜଳପଥରେ ଷ୍ଟିମ ବୋଟ ସାହାଯ୍ୟରେ ଗୋଟିଏ ବିରକ୍ତି ଜନକ ଭ୍ରମଣ କରିଥିଲେ । ମୋର ଭଲରୂପେ ମନେଅଛି ଏବଂ ତୁମର ମନେ ପଡ଼ିପାରେ ଯେ ଲୁଇଭିଲ ଠାରୁ ଓହିଓ ମୁହାଣ ପର୍ଯ୍ୟନ୍ତ ଷ୍ଟିମର ଉପରେ ଦଶ ବାର ଜଣ ଦାସ ଏକତ୍ର ଶୃଙ୍ଖଳିତ ଥିଲେ । ଏହି ଦୃଶ୍ୟଟି ସର୍ବଦା ମୋତେ କଷ୍ଟ ଦେଉଥିଲା । ମୁଁ ଯେତେବେଳେ ଓହିଓର ସଂସ୍ପର୍ଶରେ ଆସେ କିମ୍ବା ଅନ୍ୟ କୌଣସି କ୍ରୀତଦାସ ସୀମାନ୍ତରେ ପହଞ୍ଚେ ତେତେବେଳେ ମୁଁ ଏହି ଧରଣର ଦୃଶ୍ୟ ଦେଖିବାକୁ ପାଏ । ମୋର ଜୀବନକୁ ଶୋଚନୀୟ କରି ଗଢ଼ିବାର କ୍ଷମତା ସେ ଜିନିଷର ଅଛି ଏବଂ ଯାହା ନିରନ୍ତର ମୋତେ ଦୁଶ୍ଚିନ୍ତାଗ୍ରସ୍ତ କରିଅଛି ସେ ବିଷୟରେ ମୋର ସ୍ୱାର୍ଥ ନାହିଁ ଏକଥା କହିବା ତୁମପକ୍ଷରେ ସମୀଚୀନ ହୁଏନାହିଁ । ତୁମର ବରଂ ବୁଝିବା ଉଚିତ ଯେ ସମ୍ବିଧାନ ଏବଂ ଇଉନିୟନର ପ୍ରତି ଆନୁଗତ୍ୟ ବଜାୟ ରଖିବା ପାଇଁ ଉତ୍ତରାଞ୍ଚଳର ଜନସାଧାରଣ ଏକ ବିରାଟ ଅଂଶକୁ ନିଜର ମନୋଭାବରେ ଦମନ କରି ରଖି ଅଛନ୍ତି ।

ହଁ, ମୁଁ ଦାସପ୍ରଥା ପ୍ରସାରର ବିରୋଧିତା କରେ, କାରଣ ମୋର ବିଚାର ବୁଦ୍ଧି ଏବଂ ମୋର୍ ମନ ମୋତେ ପ୍ରବୁଦ୍ଧ କରେ, ଏବଂ ଏହାର ବିପରୀତ ଆଚରଣ କରିବାର କୌଣସି ବାଧ୍ୟ ବାଧକତା ନାହିଁ । ଏଥିପାଇଁ ଯଦି ତୁମ ଏବଂ ମୋ ମଧ୍ୟରେ ବିଭେଦ ସୃଷ୍ଟିହୁଏ, ତାହା ହେଉ............

ମୁଁ କିଛି-ନଜାଣିବା * ସଂଘର ସଭ୍ୟ ନୁହେଁ ।ଏହା ସୁନିଶ୍ଚିତ । ମୁଁ କିପରି ତାହା ହୋଇଥାନ୍ତି ? ଯେଉଁ ଲୋକ ନିଗ୍ରୋମାନଙ୍କ ଅତ୍ୟାଚାରର ପ୍ରତି ବିରୋଧ କରେ ସେ କିପରି ଶ୍ୱେତକାୟ ଜନସାଧାରଣଙ୍କ ଅଂଶ-ବିଶେଷର ଅବନତି ଘଟାଇବାକୁ ଚାହିଁପାରେ ? ଅଧଃପତନ ଦିଗରେ ଆମ୍ଭେମାନେ ଖୁବ୍ ଦ୍ରୁତ ଗତିରେ ଆଗଉଛୁଁ ବୋଲି ମୋର ମନେ ହୁଏ । ଜାତି ହିସାବରେ ଆମ୍ଭେମାନେ ଘୋଷଣା ଆରମ୍ଭ କରିଥିଲେ "ସକଳ ମନୁଷ୍ୟ ସମଭାବରେ ସୃଷ୍ଟି ହୋଇ ଅଛନ୍ତି" । କାର୍ଯ୍ୟତଃ, ବର୍ତ୍ତମାନ ଆମ୍ଭେମାନେ ପ୍ରକୃତରେ ଏହାର ଅର୍ଥ କରୁଛୁଁ; "ସକଳ ମନୁଷ୍ୟ ସମଭାବରେ ସୃଷ୍ଟି ହୋଇ ଅଛନ୍ତି—ନିଗ୍ରୋମାନଙ୍କ ବ୍ୟତୀତ," କିଛି-ନଜାଣିବା ଦଳ ଯେତେବେଳେ କ୍ଷମତା ପାଇବେ ତେତେବେଳେ ତାଙ୍କର ଭାଷା ହେବ, "ସକଳ ମନୁଷ୍ୟ ସମଭାବରେ ସୃଷ୍ଟି ହୋଇ ଅଛନ୍ତି—ନିଗ୍ରୋ, ବିଦେଶୀ ଏବଂ କ୍ୟାଥଲିକଗଣଙ୍କ ବ୍ୟତୀତ ।" ଯେଉଁଦିନ ତାହା ଘଟିବ ସେଦିନ ମୁଁ ଏପରି ଦେଶକୁ ଚାଲିଯିବି ଯେଉଁ ଦେଶରେ ସ୍ୱାଧୀନତା ପ୍ରେମର ଛଳନା ନାହିଁ—ଯେପରି ଋଷିଆ, ସେଠାରେ ପ୍ରକୃତ ସ୍ୱେଚ୍ଛାଚାରର ମିଳିବ କିନ୍ତୁ ଭଣ୍ଡାମି ନାହିଁ ।

ତୁମର ଚିରବନ୍ଧୁ
ଏ, ଲିଙ୍କନ

---

* ବିଃ ଦ୍ରଃ—ସେହି ସମୟରେ ଗୋଟିଏ କ୍ଷୁଦ୍ର ଉତ୍ସାହୀ ରାଜନୈତିକ ଦଳକୁ ସାଧାରଣ ଭାବରେ କିଛି ନଜାଣିବା **(Know-nothing)** ଦଳ କୁହା ଯାଉଥିଲା । ଶୀଘ୍ର ଏହାର ଅସ୍ତିତ୍ୱ ଲୋପ ପାଇଥିଲା ।

## ଜଣୈକ ଯୁବକଙ୍କୁ ପରାମର୍ଶ

ଜଣେ ଖ୍ୟାତନାମା ଆଇନଜ୍ଞ ହିସାବରେ ଲିଙ୍କନର ଖୁବ୍ ପ୍ରସାର ଥିଲା । ତେଣୁ ତାଙ୍କ ଦପ୍ତରରେ ଆଇନଶାସ୍ତ୍ର ଅଧ୍ୟୟନ କରିବାପାଇଁ ଅନେକ ଯୁବକଙ୍କଠାରୁ ସେ ନିବେଦନ ପତ୍ର ପାଉଥିଲେ । ୧୮୫୫ ମସିହାରେ ସେ ଜଣୈକ ଯୁବକଙ୍କୁ ଏକ ସୁନ୍ଦର ପରାମର୍ଶ ପତ୍ର ଲେଖିଥିଲେ ।

ଇଶାମ ରିଭସ୍, ଏସ୍କୋୟାର, ସ୍ପ୍ରିଂଫିଲ୍ଡ, ନଭେମ୍ବର, ୫, ୧୮୫୫

ପ୍ରିୟ ଭଦ୍ରମହୋଦୟ,

ବର୍ତ୍ତମାନ ଘରକୁ ଫେରି ମୁଁ ଆପଣଙ୍କର ଗତମାସର ୨୩ ତାରିଖର ପତ୍ର ଖଣ୍ଡିକ ପାଇଛି । ମୁଁ ଘରର ବାହାରେ ଏତେ ବେଶି ସମୟ ରହେ ଯେ, ମୋ ସହିତ କୌଣସି ଯୁବକ ରହି ଆଇନଶାସ୍ତ୍ର ସୁବିଧାରେ ପଢି ପାରିବ ନାହିଁ । ଯଦି ଆପଣ ଆଇନଜ୍ଞ ହେବାପାଇଁ ଦୃଢ଼ ପ୍ରତିଜ୍ଞାବଦ୍ଧ ହୋଇ ଥାଆନ୍ତି ତାହାହେଲେ ଏହା ମଧ୍ୟରେ ଅର୍ଦ୍ଧେକ କାର୍ଯ୍ୟ ସମ୍ପନ୍ନ ହୋଇଅଛି । ଆପଣ କାହାର ପାଖରେ ପଢନ୍ତୁ ଅଥବା ନ ପଢନ୍ତୁ ସେଥିରେ କିଛି ଯାଏ ଆସେନା । ମୁଁ କାହାର ନିକଟରେ ପାଠ ପଢିନାହିଁ । ବହୁତ ଗୁଡ଼ିଏ ବହି ସଂଗ୍ରହ କରନ୍ତୁ ଏବଂ ପଢନ୍ତୁ—ଯେ ପର୍ଯ୍ୟନ୍ତ ଆପଣ ବହିଗୁଡ଼ିକର ପ୍ରଧାନ, ପ୍ରଧାନ ବିଷୟ ଗୁଡ଼ିକ ବୁଝି ନପାରିଛନ୍ତି ସେ ପର୍ଯ୍ୟନ୍ତ ଅଧ୍ୟୟନ କରନ୍ତୁ, ଏହାହିଁ ହେଉଛି ଅସଲ ଜିନିଷ । ଅଧ୍ୟୟନ ସମୟରେ ବଡ ସହରରେ ଅଛନ୍ତି କି ନା ତାହା ନିରର୍ଥକ । ମୁଁ ନିଉସାଲେମ୍‌ରେ ପଢି ଥିଲି, ଯେଉଁଠାରେ ତିନିଶହରୁ ବେଶି ଲୋକ ନଥିଲେ । ପୁସ୍ତକଗୁଡ଼ିକୁ ବୁଝିବାର କ୍ଷମତା ଆପଣଙ୍କର ସବୁଠାରେ ସମାନ ଥାଏ । ମିଃ ଡ୍ରମାର ଜଣେ ବୁଦ୍ଧିମାନ ବ୍ୟକ୍ତି ଏବଂ ଜଣେ ବିଜ୍ଞ ଆଇନଜୀବି (ଆଇନ ଶିକ୍ଷାରେ ସେ ମୋ ଅପେକ୍ଷା ଅଧିକ ପୁଷ୍ଟ); ମୋର ଖୁବ୍ ବିଶ୍ୱାସ ଯେ କେଉଁ ୨ ପୁସ୍ତକ ପଢିବାକୁ ହେବ ସେ ଖୁବ୍ ଆନନ୍ଦରେ ଆପଣଙ୍କୁ କହିଦେବେ ଏବଂ ଆପଣଙ୍କୁ ପୁସ୍ତକ ଦେଇ ସାହାଯ୍ୟ କରିବେ ।

ସର୍ବଦା ସ୍ମରଣ ରଖିବେ ଯେ ସାଫଲ୍ୟର ପାଇଁ ଆପଣଙ୍କର ସଂକଳ୍ପ ଅନ୍ୟ ସବୁ ବିଷୟ ଅପେକ୍ଷା ଅଧିକତର ଗୁରୁତ୍ୱପୂର୍ଣ୍ଣ

ଆପଣଙ୍କର ବିଶ୍ୱସ୍ତ ବନ୍ଧୁ
ଏ, ଲିଙ୍କନ

## ମନୁଷ୍ୟର ସମ ଅଧିକାର ସମ୍ବନ୍ଧୀୟ

୧୮୫୭ ମସିହାରେ ମାର୍କିଣ ଯୁକ୍ତ ରାଷ୍ଟ୍ରର ସର୍ବୋଚ୍ଚ ବିଚାରାଳୟରେ ସଂଖ୍ୟାନ୍ୟୂନ ଗରିଷ୍ଠ ମତରେ ତଥାକଥିତ ଡ୍ରେଡ ସ୍କଟ୍ **(Dread Scott)** ମୋକଦ୍ଦମାର ନିଷ୍ପତ୍ତି, ତତ୍‌କାଳୀନ ଜ୍ୱଳନ୍ତ କ୍ରୀତଦାସ ପ୍ରଥା ପ୍ରଶ୍ନରେ ଇନ୍ଧନ ଯୋଗାଇ ଥିଲା ।

ନିଷ୍ପତ୍ତି ନିଗ୍ରୋମାନଙ୍କର ଅଧିକାର ଖର୍ବ ଭାବରେ ସଙ୍କୁଚିତ କରିଥିଲା । ସେହିବର୍ଷ ଜୁନ୍ ମାସରେ ଏ ବିଷୟରେ ଲିଙ୍କନ ତାଙ୍କର ପ୍ରତିଦ୍ୱନ୍ଦୀ ଡଗଲସଙ୍କ ଯୁକ୍ତିର ଉତ୍ତରରେ ଗୋଟିଏ ବକ୍ତୃତା ଦେଇ ମନୁଷ୍ୟର ସମାନ ଅଧିକାର ସଂବନ୍ଧରେ ତାଙ୍କର ମତ ପରିସ୍ଫୁଟିତ କରିଥିଲେ ।

……ବିଚାରପତି ଡଗଲାସ କହନ୍ତି ରିପବ୍ଲିକାନ୍‌ମାନେ ଜୋର ଦେଇ କହୁଛନ୍ତି ଯେ ସ୍ୱାଧୀନତାର ଘୋଷଣା ପତ୍ରରେ ଧଳା ଏବଂ କଳା ସମସ୍ତ ମନୁଷ୍ୟର କଥା ଉଲ୍ଲେଖ ଅଛି, ସେ ସଙ୍ଗେ ସଙ୍ଗେ ସାହାସର ସହିତ ଅସ୍ୱୀକାର କରିଛନ୍ତି ତନ୍ମଧ୍ୟରେ ନିଗ୍ରୋମାନଙ୍କର କଥା କୁହା ଯାଇଅଛି, ତତ୍‌ପରେ ସେ ଗମ୍ଭୀରଭାବେ ଯୁକ୍ତି ଦେଖାଇ କହିଛନ୍ତି ଯେ, ଯେଉଁମାନେ କହନ୍ତି ସମ୍ବିଧାନରେ ନିଗ୍ରୋମାନଙ୍କର କଥା କୁହାଯାଇଛି, ସେମାନେ ଏହି କାରଣରୁ କହନ୍ତି ଯେ ସେମାନେ ନିଗ୍ରୋମାନଙ୍କ ସହିତ ଭୋଟ ଦେବେ, ଆହାର କରିବେ, ଶୟନ କରିବେ ଏବଂ ବିବାହ ସୂତ୍ରେ ଆବଦ୍ଧ ରହିବେ । ସେମାନଙ୍କର ଅଭିମତରେ ଆଉ ଅନ୍ୟ କୌଣସି ଯୁକ୍ତି ରହି ନ ପାରେ । ଯେଉଁ ଯୁକ୍ତିରେ କୁହାଯାଏ ଯେ, ଯେହେତୁ ମୁଁ କୃଷ୍ଣକାୟ ରମଣୀଙ୍କୁ କ୍ରୀତଦାସୀ ହିସାବରେ ରଖିବାକୁ ଚାହେଁନା ସେହିହେତୁ ନିଶ୍ଚୟ ତାହାଙ୍କୁ ପତ୍ନୀ ହିସାବରେ ପାଇବାକୁ ଚାହେଁ—ସେହିଭଳି କୃତ୍ରିମ ତର୍କର ବିରୋଧୀତା କରିବାକୁ ଚାହେଁ । ଉଲ୍ଲିଖିତ କୌଣସି ହିସାବରେ ମୁଁ ତାକୁ ପ୍ରୟୋଜନ କରେ ନାହିଁ । କିନ୍ତୁ କେତେକ ବିଷୟରେ ମୋ ସହିତ ସମକକ୍ଷ ନ ହୋଇ ପାରେ, କିନ୍ତୁ ନିଜର ଶ୍ରମର୍ଜିତ ଆହାର୍ଯ୍ୟ ଅପର କାହା ସହିତ ପରାମର୍ଶ ନକରି ଖାଇବାର ତାହାର ସହଜାତ ଅଧିକାର ରହିଅଛି । ସେ ସେଥିରେ ମୋ ସହିତ ଏବଂ ସମସ୍ତଙ୍କ ସହିତ ସମାନ ।

ଡ୍ରେଡ ସ୍କଟ୍ ମୋକଦ୍ଦମା ପ୍ରସଙ୍ଗରେ ପ୍ରଧାନ ବିଚାରପତି ଟ୍ୟାନି ସ୍ୱୀକାର କରିଛନ୍ତି ଯେ ସ୍ୱାଧୀନତାର ଘୋଷଣା ପତ୍ରରେ ଭାଷା ଏପରି ବ୍ୟାପକ ଯେ ତନ୍ମଧ୍ୟରେ ସମଗ୍ର ମାନବ ପରିବାରକୁ ମଧ୍ୟ ଅନ୍ତର୍ଭୁକ୍ତ କରି ଯାଇପାରେ କିନ୍ତୁ ସେ ଏବଂ ବିଚାରପତି ଡଗଲାସ ଯୁକ୍ତି ଦେଖାଇଛନ୍ତି ଯେ ଏହି ଘୋଷଣା ପତ୍ରର ରଚୟିତା-ଗଣ ନିଗ୍ରୋମାନଙ୍କୁ ଅନ୍ତର୍ଭୁକ୍ତ କରିବାକୁ ଚାହିଁ ନାହାଁନ୍ତି, କାରଣ ସେମାନେ ନିଗ୍ରୋମାନଙ୍କୁ ଶ୍ୱେତକାୟ-ମାନଙ୍କ ସହିତ ସମପର୍ଯ୍ୟାୟଭୁକ୍ତ କରି ନଥିଲେ । କିନ୍ତୁ ଏହି ଯୁକ୍ତି ଏହି କାରଣରୁ ମୂଲ୍ୟହୀନ ଯେ, ସେମାନେ ସେତେବେଳେ ବା ପରେ କୌଣସି ସମୟରେ କାର୍ଯ୍ୟତଃ ଶ୍ୱେତକାୟମାନଙ୍କୁ ସମପର୍ଯ୍ୟାୟଭୁକ୍ତ କରି ନଥିଲେ । ଘୋଷଣା ପତ୍ରର ସହଜ ଏବଂ ସୁସ୍ପଷ୍ଟ ଭାଷାର ଏହିପରି ପ୍ରକଟ ବିକୃତିର ସମର୍ଥନରେ ଏହାହିଁ ହେଉଛି ପ୍ରଧାନ ବିଚାରପତି ଓ ସିନେଟରଙ୍କ ପ୍ରଧାନ ଯୁକ୍ତି । ମୁଁ ଭାବୁଛି ଯେ ଏହି ବିଶିଷ୍ଟ ପତ୍ରର ରଚୟିତାଗଣ ସବୁ ଲୋକଙ୍କ କଥା କହିଅଛନ୍ତି; ତେବେ ସେମାନେ କହିବାକୁ ଚାହିଁ ନାହାଁନ୍ତି ବର୍ଣ୍ଣ, ଆକାର, ବୁଦ୍ଧି, ନୈତିକ ବିକାଶ ଓ ସାମାଜିକ ଦକ୍ଷତା ଦିଗରୁ ସମସ୍ତେ ସମାନ । ମୋଟାମୋଟି ବୋଧଗମ୍ୟ ଭାଷାରେ ସେମାନେ ସଠିକ୍ ନିର୍ଦ୍ଦେଶ କରିଥିଲେ, କେଉଁ କେଉଁ ବିଷୟରେ ସମସ୍ତ ମନୁଷ୍ୟ ସମାନ । ସେମା-ନଙ୍କ ଅଭିମତରେ ସବୁ ମନୁଷ୍ୟମାନଙ୍କର "କେତେକ ସହଜାତ ଅଧିକାର ଅଛି; ସେହି ସବୁ ଅଧିକାର ହେଉଛି ଜୀବନ, ସ୍ୱାଧୀନତା ଏବଂ ସୁଖାନୁସରଣ ଅଧିକାର ।"

ଏହି ସମସ୍ତ ବିଷୟରେ ସମସ୍ତଙ୍କର ସମାନ ଅଧିକାର ରହିବ ବୋଲି ସେମାନେ କହିଥିଲେ ଏବଂ ଅଭିପ୍ରାୟ ତାହାହିଁ ଥିଲା । ସେହି ସମୟରେ ସମସ୍ତେ ସାମ୍ୟଭୋଗ କରିଥିଲେ ବା ତେତେବେଳେ ସେହି ସାମ୍ୟକୁ ପ୍ରତିଷ୍ଠିତ କରିବାକୁ ଚାହିଁଥିଲେ ଏହିପରି ନିର୍ଲଜ୍ଜ ଅସତ୍ୟ ସେମାନେ କେବେ ଚାହିଁ ନଥିଲେ । ବସ୍ତୁତଃ ସେହି ସୌଭାଗ୍ୟ ଆଣିବାର କ୍ଷମତା ସେମାନଙ୍କର ନଥିଲା । ସେମାନେ କୌଣସି ଅଧିକାର

ଘୋଷଣା କରିବାକୁ ଚେଷ୍ଟା କରୁ ନଥିଲେ ଯେଉଁଠାରେ ଅବସ୍ଥାନୁଯାୟୀ ଯଥାଶୀଘ୍ର କାର୍ଯ୍ୟକାରୀ ହୋଇ ପାରିବ । ସ୍ୱାଧୀନ ସମାଜ ପାଇଁ ସେମାନେ ଗୋଟିଏ ନିର୍ଦ୍ଧାରିତ ସୂତ୍ର ପ୍ରଚଳନ କରିବାକୁ ଚାହିଁଥିଲେ— ଯାହାକୁ ସମସ୍ତେ ଜାଣିବେ ଏବଂ ଶ୍ରଦ୍ଧା କରିବେ ଏବଂ ବାସ୍ତବରେ ଯାହାର ରୂପରେଖ ସମ୍ପୂର୍ଣ୍ଣରୂପେ ସମ୍ଭବ ନହେଲେ ସୁଦ୍ଧା ବହୁଳାଂଶରେ ସମ୍ଭବ ହେବ, ଯାହାଦ୍ୱାରା ସମସ୍ତେ ପରିଚାଳିତ ହେବେ ଏବଂ ଯାହାପାଇଁ ସମସ୍ତେ ଚେଷ୍ଟା କରିବେ । ଏହିପରି ଭାବରେ ଏହାର ପ୍ରଭାବ ସତତ ବିସ୍ତୃତ ଓ ଗଭୀର ହୋଇ ସର୍ବତ୍ର ସକଳ ବର୍ଣ୍ଣର ଜନସାଧାରଣଙ୍କ ଜୀବନର ମୂଲ୍ୟ ଏବଂ ସୁଖ-ବୃଦ୍ଧିରେ ସହାୟତା ହେବ । "ସମସ୍ତ ମନୁଷ୍ୟ ସମାନ ଭାବରେ ସୃଷ୍ଟି ହୋଇଛନ୍ତି" ଏହି ବାକ୍ୟଟି ଗ୍ରେଟ ବ୍ରିଟେନ ଠାରୁ ବିଭିନ୍ନ ହେବା ବ୍ୟାପାରରେ କାର୍ଯ୍ୟତଃ କୌଣସି ସାହାଯ୍ୟରେ ଆସିନାହିଁ; ଏବଂ ଘୋଷଣା ପତ୍ରରେ ଏହା ସେଥିଯୋଗୁଁ ସ୍ଥାନ ପାଇଅଛି ଭବିଷ୍ୟତରେ ବ୍ୟବହାର ପାଇଁ । ଏହାର ରଚୟିତାଗଣ ଚାହିଁଥିଲେ—ଈଶ୍ୱରଙ୍କୁ ଧନ୍ୟବାଦ, ଏହାର ରଚୟିତାଗଣ ଏହାହିଁ ଚାହିଁଥିଲେ । ପରବର୍ତ୍ତୀ ସମୟରେ ଯଦି କେହି ସ୍ୱାଧୀନ ଜାତିକୁ ସ୍ୱେଚ୍ଛାଚାରର ଘୃଣା ପଥରେ ଫେରାଇ ନେବାକୁ ଚାହେଁ, ତେବେ ସେମାନଙ୍କ ପଥରେ ଏହା ପ୍ରତିବନ୍ଧକ ସୃଷ୍ଟି କରିବ ।

## ବିଭକ୍ତ ପରିବାର

ଦାସପ୍ରଥା ପ୍ରଶ୍ନ ସଂବନ୍ଧରେ ବିବାଦ ବଢ଼ି ଚାଲିବା ଯୋଗୁଁ ଦେଶରେ ପୁନର୍ବାର ରାଜନୈତିକ ଏକତା ଦେଖାଦେଲା । ଲିଙ୍କନଙ୍କ ପୁରାତନ ହୁଇଗ (Wigh) ଦଳର ଅସ୍ତିତ୍ୱ ଲୋପ ପାଇଥିଲା ; ଏବଂ ନୂତନ ରିପବ୍ଲିକାନ ଦଳ ଲିଙ୍କନଙ୍କ ଦଳ-ପତିତ୍ୱରେ ବିଦ୍ୟମାନ ହୋଇଥିଲା । ୧୮୫୮ ମସିହା ଜୁନ ମାସରେ ରିପବ୍ଲିକାନ ରାଜ୍ୟପରିଷଦ ପ୍ରତିନିଧି ସଭାର ଶେଷ ଅଧିବେଶନରେ ସେ ଗୋଟିଏ ସାରଗର୍ଭକ ଭାଷଣ ଦେଇଥିଲେ । ସେହି ଭାଷଣରେ ସେ ପ୍ରବଳ ଭାବରେ ତତ୍‌କାଳୀନ ରାଜନୈତିକ ଦଳପତିମାନଙ୍କୁ ତୁଳନା କରି—ଦେଶର ସମ୍ମୁଖୀନ ସମସ୍ୟାର ଆଲୋଚନା କରିବା ଦ୍ୱାରା ତାଙ୍କର ନାମ ଦେଶ ତମାମ ବ୍ୟାପୀ ଯାଇଥିଲା । ତାଙ୍କ ଭାଷଣର ପ୍ରାରମ୍ଭିକ ଅନୁଚ୍ଛେଦଟି ଦେଶବାସୀଙ୍କୁ ଚମକାଇ ଦେଇଥିଲା ।

ଆଗରୁ ଜାଣି ପାରିଥାନ୍ତୁ ଯେ ଆମ୍ଭେମାନେ କେଉଁଠାରେ ଅଛୁ ଏବଂ କେଉଁ ଦିଗକୁ ଯାଉଛୁଁ, ତାହାହେଲେ କ'ଣ କରିବାକୁ ହୋଇଥାନ୍ତା, ତାହା ଆମ୍ଭେମାନେ ଆଗରୁ ଭଲକରି ବୁଝି ପାରିଥାନ୍ତୁ । ଦାସପ୍ରଥା ସମ୍ପର୍କିତ ଆନ୍ଦୋଳନର ପରିସମାପ୍ତି ସର୍ବଜନସ୍ୱୀକୃତ ଉଦ୍ଦେଶ୍ୟ, ଏବଂ ତାହାପ୍ରତି ସୁନିଶ୍ଚିତ ଆଶ୍ୱାସ ରଖି, ଯେଉଁ ନୀତିର ସୂଚନା କରାହୁଏ ତାହା ଆଜି ପଞ୍ଚମ ବର୍ଷରେ ପଡ଼ିଅଛି ।

ସେହିନୀତି ବଳବତ୍ ହେବା ଫଳରେ ଆନ୍ଦୋଳନ ଯେ କେବଳମାତ୍ର ହ୍ରାସ ପାଇନାହିଁ, ଉପରନ୍ତୁ ତାହା ସର୍ବଦା ବୃଦ୍ଧି ପାଇଅଛି ।

ମୋ ମତରେ ଗୋଟିଏ ସଙ୍କଟ ନ ଆସିବା ପର୍ଯ୍ୟନ୍ତ ଏବଂ ତାହା ଉତ୍ତୀର୍ଣ୍ଣ ନହେବା ପର୍ଯ୍ୟନ୍ତ ଆନ୍ଦୋଳନ ଶେଷ ହେବନାହିଁ ।

ମୋର ବିଶ୍ୱାସ, ଦେଶର ଅଧିକ ଅଂଶରେ କୃଷ୍ଣକାୟମାନେ ମୁକ୍ତ ରହିଲେ ଏବଂ ଅପର ଅର୍ଦ୍ଧେକାଂଶରେ ସେମାନେ କ୍ରୀତଦାସ ରହିଲେ, ସରକାର ଦୀର୍ଘଜୀବୀ ହେବନାହିଁ ।

ଇଉନିୟନ ଅବଲୁପ୍ତ ହେଉ ଏହା ମୁଁ ଆଶା କରେନାହିଁ—ମୁଁ ଚାହେଁନା ଯେ ସଂସାର ଧ୍ୱଂସ ହୋଇଯାଉ; କିନ୍ତୁ ମୁଁ ଅବଶ୍ୟ ଚାହେଁ ଯେ ଏହା ଆଉ ବିଭକ୍ତ ନହେଉ ।

ହୁଏତ ଏହା ସମ୍ପୂର୍ଣ୍ଣରୂପେ ଗୋଟିଏ ଜିନିସ ହେବ, ନ ହେଲେ ସମ୍ପୂର୍ଣ୍ଣରୂପେ ଅନ୍ୟ ଜିନିସ ହେବ ।

ହୁଏତ କ୍ରୀତଦାସ ପ୍ରଥାର ବିରୋଧୀଗଣ ତାହାର ଅଧିକତର ବିସ୍ତାରର ପ୍ରତିହତ କରିବେ ଏବଂ ଏହାକୁ ଏପରି ଅବସ୍ଥାରେ ରଖିବେ, ଯେତେବେଳେ ଜନସାଧାରଣମାନେ ନିଶ୍ଚିତ ରହି ପାରିବେ ଯେ ଏହାର ଅନ୍ତିମ ମୃତ୍ୟୁ ଆସନ୍ନ ; ନ ହେଲେ ଏହାର ସମର୍ଥକଗଣ ଏହାକୁ ଆହୁରି ଆଗକୁ ଆଗେଇ ଆଣିବେ ଯେତେବେଳ ପର୍ଯ୍ୟନ୍ତ ନୂତନ ଏବଂ ପୁରାତନ, ଉତ୍ତର ଏବଂ ଦକ୍ଷିଣ, ସବୁ ରାଷ୍ଟ୍ରରେ ଏହା ବିଧିସମ୍ମତରେ ପରିଣତ ନହେଉଛି…… ।

## ଦାସପ୍ରଥା ସମ୍ପର୍କିତ ଅଭିମତର ସମ୍ପ୍ରସାରଣ

"ବିଭକ୍ତ ପରିବାର" ସମ୍ପର୍କିତ ଚମକପ୍ରଦ ବକ୍ତୃତା ଫଳରେ ଲିଙ୍କନଙ୍କ ଉପରେ ନିନ୍ଦା ବର୍ଷଣ ହେବାକୁ ଲାଗିଲା । ଅନ୍ୟାନ୍ୟ ସମାଲୋଚକଙ୍କ ମଧ୍ୟରେ ଥିଲେ ଲିଙ୍କନଙ୍କର ପୁରାତନ ପ୍ରତିଦ୍ୱନ୍ଦ୍ୱୀ ସିନେଟର ଡଗଲାସ । ସେହିବର୍ଷ ଜୁଲାଇ ମାସରେ ଚିକାଗୋରେ ପ୍ରଦତ୍ତ ଏକ ବକ୍ତୃତାରେ ଲିଙ୍କନ ତାଙ୍କର ଅଭିମତ ବିଶଦଭାବରେ ବ୍ୟାଖ୍ୟା କଲେ :

ପ୍ରଥମତଃ ଅର୍ଦ୍ଧସ୍ୱାଧୀନ ଏବଂ ଅର୍ଦ୍ଧଦାସ ଅବସ୍ଥାରେ ଏହି ସରକାର ଯେଉଁ ବୟାଅଶୀ ବର୍ଷ ଧରି ବଞ୍ଚି ରହିଅଛି ସେ ସମ୍ବନ୍ଧରେ ମୁଁ ଅନଭିଜ୍ଞ ନୁହେଁ । ଏହି ଦେଶର ଇତିହାସ ସହିତ ମୋର ମୋଟାମୋଟି ପରିଚୟ ଅଛି ଏବଂ ମୁଁ ଜାଣେ ଯେ ବୟାଅଶୀ ବର୍ଷ ଧରି ତାହା ଅର୍ଦ୍ଧସ୍ୱାଧୀନ ଓ ଅର୍ଦ୍ଧଦାସ ଅବସ୍ଥାରେ ଅଛି । ମୁଁ ବିଶ୍ୱାସ କରେ—ଏବଂ ଏ କଥାଟି ମୁଁ କହିବାକୁ ଚାହେଁ—ମୁଁ ଏହି କାରଣରୁ ସ୍ଥାୟୀ ବୋଲି ବିଶ୍ୱାସ କରେ ଯେ ନେବ୍ରାସ୍କା ବିଲ୍‌ର ଉତ୍ଥାପନର ପୂର୍ବ ପର୍ଯ୍ୟନ୍ତ ସର୍ବଦା ଜନସାଧାରଣଙ୍କର ମନ ଏହି ବିଶ୍ୱାସରେ ଆଶ୍ୱସ୍ତ ଥିଲା ଯେ ଦାସପ୍ରଥା ଅନ୍ତିମ ମୃତ୍ୟୁ ଦିଗରେ ଚାଲିଅଛି । ଏହି ବିଶ୍ୱାସରେ ସେହି ୮୨ବର୍ଷ ସମୟ ଆମ୍ଭେମାନେ ନିଶ୍ଚିନ୍ତରେ କଟାଇଲୁ ; ଅନ୍ତତଃ ତାହାହିଁ ମୋର ବିଶ୍ୱାସ । ମୋର ବିଶ୍ୱାସ ଦାସପ୍ରଥା ରହିତ କରିବା ପାଇଁ ଯେଉଁମାନେ ବ୍ୟଗ୍ର, ସେମାନଙ୍କର କୌଣସି ସମର୍ଥକର ନ୍ୟାୟକୁ ସମଭାବେ ମୁଁ ସର୍ବଦା ଦାସ-ପ୍ରଥାକୁ ଘୃଣାକରି ଆସିଅଛି । ମୁଁ ଚିରକାଳ ପାଇଁ ଜଣେ ପ୍ରାଚୀନପନ୍ଥୀ ହୁଇଗ । ମୁଁ ସର୍ବଦା ତାହା ଘୃଣା କରି ଆସିଅଛି ; କିନ୍ତୁ ନେବ୍ରାସ୍କା ବିଲ ଉତ୍ଥାପନର ଏହି ନୂତନ

ଅଧ୍ୟାୟର ପୂର୍ବେ ମୁଁ ସର୍ବଦା ନୀରବ ରହି ଆସିଅଛି । ମୋର ସତତ ବିଶ୍ୱାସଥିଲା ଯେ, ପ୍ରତ୍ୟେକ ଏହାର ବିରୋଧୀ ଏବଂ ଏହା ଅନ୍ତିମ ବିଲୋପ ପଥରେ·········ଜାତିର ଅଧିକାଂଶ ଏହି ବିଶ୍ୱାସରେ ନିରସ୍ତଥିଲେ ଯେ, ଦାସପ୍ରଥା ଅନ୍ତିମ ବିଲୋପ ପଥରେ ଚାଲିଛି । ଏହି ପ୍ରକାର ବିଶ୍ୱାସର ସପକ୍ଷରେ ଅବଶ୍ୟ କାରଣ ଥିଲା ।

ସମ୍ବିଧାନ ପ୍ରଣୟନ ସମୟରେ କାହିଁକି ସେହି ସକଳ ଜ୍ଞାନୀ ବୃଦ୍ଧମାନେ ନିର୍ଦ୍ଦେଶ ଦେଲେ ଯେ, ଯେଉଁସବୁ ଅଞ୍ଚଳରେ ଦାସପ୍ରଥା ପ୍ରଚଳିତ ନାହିଁ, ସେଠାରେ ଏହାର ପ୍ରସାର କରାଯିବ ନାହିଁ ? କାହିଁକି ଘୋଷଣା କରାହୁଏ ଯେ କୋଡ଼ିଏ ବର୍ଷ ମଧ୍ୟରେ କଂଗ୍ରେସ ଆଫ୍ରିକାର ଦାସ ବ୍ୟବସାୟ, ଯାହା ମାଧ୍ୟମରେ ଦାସମାନଙ୍କର ସରବରାହ କରାହୁଏ, ବନ୍ଦ କରିଦେଇ ପାରିବେ ? କାହିଁକି ଏ ସବୁ ପାଶ୍ କରାହୁଏ । ମୁଁ ଏହି ଧରଣର ଆହୁରି ଅନେକ ଆଇନ ଉଲ୍ଲେଖ କରିପାରେ—କିନ୍ତୁ ଏହିଗୁଡ଼ିକ ଯଥେଷ୍ଟ । ଏହି ଗୁଡ଼ିକରୁ କ'ଣ ଏହା ବୁଝାଯାଏ ନାହିଁ ଯେ ସମ୍ବିଧାନର ପ୍ରଣେତାଗଣ ଏହି ବ୍ୟବସ୍ଥାର ବିଲୋପ ଚାହିଁଥିଲେ ଏବଂ ଆଶା କରିଥିଲେ ? ପୂର୍ବରୁ ଯେଉଁ ବକ୍ତୃତାରୁ ବିଚାରପତି ଡଗଲାସ ଉଦ୍ଧୃତ କରିଛନ୍ତି, ସେହି ବକ୍ତୃତାରେ ମୁଁ ଯାହା କହିଥିଲି ପୁଣି ତାହା କହୁଅଛି ଯେ, ଯେତେବେଳ ମନେ କରିବି ଯେ ଦାସପ୍ରଥାର ବିରୋଧୀଗଣ ଏହାର ଅଧିକତର ପ୍ରସାରର ପ୍ରତିରୋଧ କରୁଛନ୍ତି ଏବଂ ଏହାକୁ ଏପରି ଅବସ୍ଥାକୁ ନେଇ ଯାଉଛନ୍ତି ଯେଉଁ-ଠାରେ ଜନସାଧାରଣ ଏହି ବିଶ୍ୱାସରେ ଆଶ୍ୱସ୍ତ ରହିବେ ଯେ ଏହା ଅନ୍ତିମ ମୃତ୍ୟୁ ପଥରେ ଚାଲିଅଛି—ସେତେବେଳେ ମୁଁ କେବଳ ଏହି କଥାଟି କହିବାକୁ ଚାହେଁ ଯେ ସେମାନେ ଏହାକୁ ଠିକ୍ ସେହି ସ୍ଥାନରେ ରଖିବେ ଯେଉଁଠାରେ ଏହି ସରକାରର ପ୍ରତିଷ୍ଠାତା ବର୍ଗ—ପ୍ରଥମରୁ ଏହାକୁ ରଖିଥିଲେ·········

## ଦାସପ୍ରଥା ସମ୍ପର୍କରେ : ସୁବିଖ୍ୟାତ ଅଂଶ

ଲିଙ୍କନ ପ୍ରାୟେ ତାଙ୍କର ମନୋଭାବ କାଗଜରେ ଲିପିବଦ୍ଧ କରୁଥିଲେ, ତାଙ୍କର ସ୍ମାରକଲିପିର ଅନେକଗୁଡ଼ିଏ ଅଂଶ ସଂରକ୍ଷିତ ହୋଇ ରହିଅଛି । ଯେଉଁଟି ସର୍ବାପେକ୍ଷା ଅଧିକବାର ଉଦ୍ଧୃତ ହୋଇଅଛି ସେଟି ୧୮୫୮ ଅଗଷ୍ଟ ମାସରେ ଲିଖିତ ହୋଇଥିଲା ବୋଲି ମନେହୁଏ ।

ମୁଁ ଯେପରି ଦାସ ହେବାକୁ ଚାହେଁ ନାହିଁ, ସେହିପରି ମୁଁ ପ୍ରଭୁ ହେବାକୁ ଚାହେଁ ନା । ଏହା ମଧ୍ୟରେ ମୋର ଗଣତନ୍ତ୍ର ସମ୍ବନ୍ଧରେ ଧାରଣା ପ୍ରକାଶ ପାଇଅଛି । ଏହାର ସହିତ ଯାହାର ସାମଞ୍ଜସ୍ୟ ନାହିଁ, ଅସାମଞ୍ଜସ୍ୟ ଅନୁପାତରେ, ତାହା ଗଣତନ୍ତ୍ର ନୁହେଁ ।

ଏ, ଲିଙ୍କନ—

## ମୁକ୍ତିର ପ୍ରେରଣା

୧୮୫୮ ମସିହା ସେପ୍ଟେମ୍ବର ମାସରେ ଇଲିନୟସ୍ଥ ଏଡ୍‌ୱାର୍ଡ୍‌ସଭିଲ୍ ଠାରେ ଲିଙ୍କନ ଗୋଟିଏ ଭାଷଣ ଦେଇଥିଲେ । ଏହି ଭାଷଣର ଯେଉଁ ଅଂଶଟି ସଂରକ୍ଷିତ କରି ରଖା ଯାଇଅଛି ତନ୍ମଧ୍ୟରେ ତାଙ୍କ ଭାଷଣରେ ଗୋଟିଏ ସାରଗର୍ଭକ ଅଂଶ ରହିଅଛି ।

ବର୍ତ୍ତମାନ ଯେତେବେଳେ·········ଆପଣମାନେ ନିଗ୍ରୋମାନଙ୍କୁ ମନୁଷ୍ୟତ୍ୱ ବିହୀନ କରାଇବାରେ କୃତକାର୍ଯ୍ୟ ହୋଇ ପାରି ଅଛନ୍ତି, ଯେତେବେଳେ ସେମାନଙ୍କୁ ବଣ୍ୟ ପଶୁ ହିସାବରେ ରଖି ପାରିଛନ୍ତି ; ଯେତେବେଳେ ସେମାନଙ୍କର ବ୍ୟକ୍ତିତ୍ୱକୁ ନଷ୍ଟକରି ପାରିଛନ୍ତି ଏବଂ ଶେଷରେ ଯେଉଁଠାରେ ଜୀବନର ଆଶା ଓ ଆକାଂକ୍ଷାର ଅଭିଶପ୍ତର ଆଶା ପରି ଘନ ଅନ୍ଧାରରେ ଅନ୍ଧକାରାଚ୍ଛନ ସେହିଠାରେ ସେମାନଙ୍କୁ ଅବସ୍ଥାନ କରାଇ ଆପଣମାନେ କ'ଣ ନିଶ୍ଚିତ ଯେ ଯେଉଁ ଦାନବକୁ ଆପଣମାନେ ଜାଗରିତ କରିଛନ୍ତି ସେ ଯେ ପରିବର୍ତ୍ତିତ ହୋଇ ଆପଣମାନଙ୍କୁ ବିଧ୍ୱସ୍ତ ନକରିବ ?

ଆମ୍ଭମାନଙ୍କର ମୁକ୍ତି ଓ ସ୍ୱାଧୀନତାର ମୂଳ ପିଣ୍ଡ କ'ଣ ଏହା ଆମ୍ଭମାନଙ୍କର ଦୁର୍ମୂଲ ସଂଗ୍ରାମ ନୁହେଁ; ଅଖଣ୍ଡ ସମୁଦ୍ର ଉପକୂଳ ନୁହେଁ; ଯୁଦ୍ଧ ଜାହାଜର ଗୋଲା ବାରୁଦ ନୁହେଁ; କିମ୍ବା ଆମର ଶୃଙ୍ଖଳିତ ସୈନ୍ୟବଳ ନୁହେଁ । ସେ ଗୁଡ଼ିକ ଉପରେ ନିର୍ଭର କରି ଆମ୍ଭର ଏହି ପବିତ୍ର ଭୂମିରେ ଅତ୍ୟାଚାରୀର ଫେରାଇ ଆଣିବାର ଆଶା ଆମ୍ଭର ନୁହେଁ । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ସ୍ୱାଧୀନତା ସଂଗ୍ରାମର ପ୍ରତିକୂଳରେ ଯାଇ ଆମ୍ଭମାନଙ୍କୁ ସକ୍ଷମ କିମ୍ବା ଅକ୍ଷମ କରି ପାରନ୍ତି । ସର୍ବଶକ୍ତିମାନ ଈଶ୍ୱର ଆମ୍ଭମାନଙ୍କ ହୃଦୟରେ ମୁକ୍ତି ପ୍ରତି ଯେଉଁ ପ୍ରଗାଢ଼ ଅନୁରାଗର ବୀଜ ରୋପଣ କରିଛନ୍ତି ସେଥିପ୍ରତି ଆମ୍ଭମାନଙ୍କର ବିଶ୍ୱାସ ସବୁବେଳେ ଅଟଳ । ଆମ୍ଭମାନଙ୍କର ନିରାପତ୍ତା ନିର୍ଭର କରେ ସେହି ଅଟଳ ବିଶ୍ୱାସ ଉପରେ ଯାହା ସବୁ ସମୟରେ, ସବୁ ସ୍ଥାନରେ ସମସ୍ତ ଲୋକଙ୍କୁ ମୁକ୍ତିଦାନର ପଥରେ ସାହାଯ୍ୟ କରିଅଛି । ଆପଣମାନେ ଏହି ପ୍ରେରଣାକୁ ଓ ବିଶ୍ୱାସକୁ ନଷ୍ଟକରି ଗୃହ ଦ୍ୱାର ପାର୍ଶ୍ୱରେ ସ୍ୱେଚ୍ଛାଚାରର ବୀଜ ରୋପଣ କରିଛନ୍ତି । ପରାଧୀନତାର ଶୃଙ୍ଖଳ ସହିତ ଅଭ୍ୟସ୍ତ ହୋଇ ସେ ଗୁଡ଼ିକୁ ବ୍ୟବହାର ନିମିତ୍ତ ନିଜର ହସ୍ତ ପଦକୁ ମୁକୁଳିତ କରି ରଖିଅଛି । ନିଜର ମୌଳିକ ଅଧିକାର ଗୁଡ଼ିକୁ ପଦାଘାତ କରି ବ୍ୟକ୍ତି ସ୍ୱାଧୀନତାର ପ୍ରତିଭାଶକ୍ତିକୁ ନଷ୍ଟକରି ସେହି ନିର୍ଦ୍ଦିଷ୍ଟ ଧୂର୍ତ୍ତ ଅତ୍ୟାଚାରୀର ପ୍ରଜା ହେବାକୁ ପ୍ରସ୍ତୁତ ହୋଇଅଛି ।

## ଦାସତ୍ୱ ସପକ୍ଷରେ ଧର୍ମତତ୍ତ୍ୱ

୧୮୫୮ ମସିହାରେ ଲିଙ୍କନ କ୍ରୀତଦାସ ପ୍ରଥା ସଂବନ୍ଧରେ ଚିନ୍ତା କରୁଥିଲେ ବୋଲି ତାଙ୍କର ସ୍ମାରକଲିପିର ଏକ ଅଂଶରୁ ପ୍ରତୀୟମାନ ହୁଏ । ଏହି ଲେଖାଟି ସେହିବର୍ଷ ସେପ୍ଟେମ୍ବର ମାସରେ ଲେଖା ହୋଇଥିବାର ଅନୁମାନ କରା ଯାଇଥିଲା ।

ପ୍ରକୃତିର ଦାନ ମଧ୍ୟରେ ମନେକର ଏହା ସତ୍ୟ ଯେ ନିଗ୍ରୋ ଶ୍ୱେତାଙ୍ଗ ଠାରୁ ନିକୃଷ୍ଟତର; ଏହି ଯୁକ୍ତିରୁ ଏହା ମଧ୍ୟ ଠିକ୍ ବିପରୀତ ବିଚାର ନୁହେଁକି ଯେ ନିଗ୍ରୋ ଯାହା ଜନ୍ମଗତ ଅର୍ଜ୍ଜନ କରିଅଛି ତାକୁ ମଧ୍ୟ ଶ୍ୱେତାଙ୍ଗ ନେବା ଉଚିତ୍? "ଯାହା ତା'ର ଦରକାର ଦାନକର" ଏହା ହେଉଛି ଖ୍ରୀଷ୍ଟଧର୍ମ ଦାନର ନିୟମ; କିନ୍ତୁ "ଯାହା ତା'ର ଦରକାର, ତାହା ତା'ଠାରୁ ଅପହରଣ କର" ଏହା ହେଉଛି ଦାସପ୍ରଥାର ନିୟମ।

ସଂକ୍ଷେପରେ ଦାସପ୍ରଥା ସମ୍ପର୍କରେ ଧର୍ମତତ୍ତ୍ୱର ନୀତି ଆପାତତଃ ବୋଧହୁଏ ଏହା ଯେ "ଦାସପ୍ରଥା ସାର୍ବଜନୀନ ଠିକ୍ ନୁହେଁ, କିମ୍ବା ସାର୍ବଜନୀନ ଭୁଲ ନୁହେଁ; କେତେକ ଲୋକଙ୍କ ପକ୍ଷରେ ଦାସ ହେବା ଭଲ; ଏବଂ ସେହି କ୍ଷେତ୍ରରେ ତାହାହିଁ ଈଶ୍ୱରଙ୍କର ମଧ୍ୟ ଇଚ୍ଛା।

ପ୍ରକୃତରେ ଈଶ୍ୱରଙ୍କ ଇଚ୍ଛା ବିରୁଦ୍ଧରେ କିଛି କରିବାର ନାହିଁ, ତଥାପି କେଉଁମାନେ ଦାସ ହେବା ଉଚିତ୍ ଏବଂ ତାହା କେଉଁ ସ୍ଥଳରେ ପ୍ରଯୁଜ୍ୟ ଏହା ଠିକ୍ କରିବା କଠିନ। ଉଦାହରଣ ସ୍ୱରୂପ, ସମ୍ମାନାର୍ଘ୍ୟ ଡକ୍ଟର ରୋଜଙ୍କର ଜଣେ ଦାସ ଅଛି ତାହାର ନାମ ସାମ୍ବୋ। ବର୍ତ୍ତମାନ ପ୍ରଶ୍ନ ହେଉଛି "ଏହା ଈଶ୍ୱରଙ୍କର ଇଚ୍ଛା କି ଯେ ସାମ୍ବୋ ସର୍ବଦା ଦାସ ରହିବ କି ମୁକ୍ତି ପାଇବ?" ସର୍ବଶକ୍ତିମାନ ଈଶ୍ୱର ମଧ୍ୟ ଏ ପ୍ରଶ୍ନ ସମ୍ବନ୍ଧରେ କୌଣସି ସ୍ପଷ୍ଟ ଉତ୍ତର ଦେଇ ନାହାଁନ୍ତି ଏବଂ ତାଙ୍କର ପ୍ରକାଶ ଗ୍ରନ୍ଥ—ବାଇବେଲ ମଧ୍ୟ ଏ ବିଷୟରେ ନୀରବ କିମ୍ବା କେହି ଏହାର ଅର୍ଥ ସମ୍ବନ୍ଧରେ ବ୍ୟକ୍ତ କରି ନାହାନ୍ତି। ସାମ୍ବୋର ଏ ବିଷୟରେ ମତ ନେବାକୁ କେହି ମଧ୍ୟ କହି ନାହାନ୍ତି। ତେଣୁ ପରିଶେଷରେ ଡକ୍ଟର ରୋଜଙ୍କୁ ଏହି ପ୍ରଶ୍ନ ସମାଧାନ କରିବାକୁ ହେବ।

ଶୀତତାପ ସ୍ଥାନରେ ବସି ହସ୍ତରେ ଚର୍ମ-ଶିକୁଳି ପିନ୍ଧି ସାମ୍ବୋର କଷ୍ଟଲବ୍ଧ ଉପାର୍ଜ୍ଜିତ ଖାଦ୍ୟଶସ୍ୟରେ ଜୀବନଧାରଣ କରି ଯେତେବେଳେ ସେ ଏହି ପ୍ରଶ୍ନର ବିଚାର କରିବେ, ସେତେବେଳେ ଯଦି ସେ ସ୍ଥିର କରନ୍ତି ଯେ ଈଶ୍ୱରଙ୍କ ଇଚ୍ଛା ସାମ୍ବୋ ସବୁଦିନ ପାଇଁ ଦାସ ରହିବ, ତାହାହେଲେ ସେ ନିଜର ସୁଖ-ସ୍ୱାଚ୍ଛନ୍ଦ୍ୟକୁ ବଜାୟ ରଖିବାକୁ ଚାହାଁନ୍ତି କିନ୍ତୁ ଯଦି ସେ ସ୍ଥିର କରନ୍ତି ଯେ ଈଶ୍ୱରଙ୍କ ଇଚ୍ଛା ସାମ୍ବୋକୁ ମୁକ୍ତି ଦିଆଯିବ, ତାହାହେଲେ ତାଙ୍କୁ ଶୀତତାପ ସ୍ଥାନ ପରିତ୍ୟାଗ କରି ହସ୍ତରୁ ଚର୍ମଶିକୁଳି ଫିଙ୍ଗିଦେଇ ନିଜର ଜୀବନଧାରଣ ପାଇଁ ପରିଶ୍ରମ କରିବାକୁ ପଡ଼ିବ। ଯେଉଁ ନୀତି ସର୍ବାପେକ୍ଷା ଯୁକ୍ତିଯୁକ୍ତ ସେହି ନିରପେକ୍ଷ ନୀତିକୁ ଡକ୍ଟର ରୋଜ ଗ୍ରହଣ କରିବାକୁ ପ୍ରସ୍ତୁତ ହେବେ କି?

କିନ୍ତୁ ଦାସପ୍ରଥା କେତେକ ଲୋକଙ୍କ ପାଇଁ ଭଲ !! ଭଲ ପଦାର୍ଥ ହିସାବରେ ଦାସପ୍ରଥା ହେଉଛି ଏକ ଅସାଧାରଣ ଆଶ୍ଚର୍ଯ୍ୟ ବସ୍ତୁ; ଏହା ହେଉଛି ଏପରି ଏକ ଭଲ ପଦାର୍ଥ, ଯାହାକୁ ନିଜପାଇଁ କେହି ଭଲ ପାଏନା।

ନିରର୍ଥକ !!! ଗଧିଆ ମେଷଶାବକମାନଙ୍କୁ ନିଜର ଉଦର ପୂରଣ କରିବା ପାଇଁ ଭଲ ବୋଲି ଭାବି ଭକ୍ଷଣ କରେନାହିଁ କିନ୍ତୁ ଏହା ମେଷଶାବକମାନଙ୍କ ଭଲପାଇଁ ଭକ୍ଷଣ କରେ !!

## ସଭାପତିତ୍ୱ ସମ୍ପର୍କରେ : ଖଣ୍ଡେ ପତ୍ର

ଯଦିଓ ଲିଙ୍କନ ମାର୍କିନ ଯୁକ୍ତରାଷ୍ଟ୍ରର ସିନେଟ୍‌ରୁ ଡଗଲସଙ୍କ ସ୍ଥାନରେ ପ୍ରାଦେଶିକ ଗଣପରିଷଦର ପ୍ରାର୍ଥୀମାନଙ୍କ ଦ୍ୱାରା ନିର୍ବାଚିତ ହେବାକୁ ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଥିଲେ; ତଥାପି ସିନେଟରମାନଙ୍କ ସହିତ ତର୍କ-ବିତର୍କ ତଥା

ଜନସାଧାରଣ ସମ୍ମୁଖରେ ପ୍ରକାଶ୍ୟ ଭାଷଣରୁ ତାଙ୍କର ଗୁରୁତ୍ୱ ଯଥେଷ୍ଟ ବଢ଼ି ଯାଇଥିଲା । ଫଳରେ ସେ ସଭାପତି ପଦ ପାଇଁ ପ୍ରାର୍ଥୀ ହେବାକୁ ଉଲ୍ଲେଖ କରିବାକୁ ଆରମ୍ଭ କରିଥିଲେ । ତାଙ୍କର ଜଣେ ନୂତନ ସମର୍ଥନକାରୀଙ୍କୁ ସେ ଆଦର୍ଶ ସ୍ୱରୂପ ନିଜକୁ ଅନୁପଯୁକ୍ତ ମନେକରି ଖଣ୍ଡିଏ ପତ୍ର ଲେଖିଥିଲେ ।

ସ୍ପ୍ରିଂ ଫିଲ୍ଡ, ଏପ୍ରିଲ ୧୬, ୧୮୫୯

ଟି, ଜେ, ପିକେଟ ଏସ୍କୋୟାର

ପ୍ରିୟ ମହାଶୟ !

ଆପଣଙ୍କର ୧୩ ତାରିଖର ପତ୍ର ଖଣ୍ଡିକ ବର୍ତ୍ତମାନ ପାଇଲି । ମୁଁ ଏପରିଭାବରେ କାର୍ଯ୍ୟରେ ସଂପୃକ୍ତ ଯେ ଖୁବ୍ ଶୀଘ୍ର ରକ୍ ଦ୍ୱୀପକୁ ଯାଇଁ ଯେ କୌଣସି ବିଷୟ ସମ୍ପର୍କରେ ଭାଷଣ ଦେଇ ପାରିବି ନାହିଁ ।

ଅନ୍ୟ ଯେଉଁସବୁ ସମ୍ପର୍କରେ ଆପଣ ଲେଖିଛନ୍ତି ସେ ସମ୍ବନ୍ଧରେ ମୁଁ ସ୍ପଷ୍ଟ ଭାବରେ କହେ ଯେ ମୁଁ ନିଜେ ସଭାପତି ପଦ ପାଇଁ ଉପଯୁକ୍ତ ନୁହେଁ । କେତେକ ପକ୍ଷପାତି ବନ୍ଧୁ ଭାବନ୍ତି ଯେ ମୁଁ ଏ ବିଷୟରେ ଖୁବ୍ ତୋଷାମଦିଆ ଓ ସନ୍ତୁଷ୍ଟ ; କିନ୍ତୁ ମୁଁ ପ୍ରକୃତରେ ଆମ୍ଭର ଭଲ ପାଇଁ ଭାବେ ଯେ, ଆପଣ ଯାହା ପରାମର୍ଶ ଦେଇଛନ୍ତି ତାହା କରାଯିବା ଉଚିତ ନୁହେଁ ।

ଏହାକୁ ଖୁବ୍ ଗୋପନୀୟ ମନେ କରିବେ ।

ଆପଣଙ୍କର ବିଶ୍ୱସ୍ତ

ଏ, ଲିଙ୍କନ୍

## କୃଷି ସମ୍ପର୍କରେ ଅଭିମତ

ଯଦିଓ ସେ ସମୟରେ ଦାସପ୍ରଥା ସମ୍ପର୍କରେ ତୁମୁଳ ଆନ୍ଦୋଳନ ଚାଲିଥିଲା, ତଥାପି ଲିଙ୍କନ ଅନ୍ୟାନ୍ୟ ବିଷୟ ସମ୍ପର୍କରେ ଗଭୀର ଭାବରେ ଚିନ୍ତା କରୁଥିଲେ । ବିସ୍ତୃତ ସୀମାନ୍ତ ପ୍ରଦେଶ ତଥା ଜନ୍ମଭୂମିର ପୁତ୍ର ହିସାବରେ କୃଷିର ଉନ୍ନତି ପାଇଁ ସବୁବେଳେ ମନଯୋଗୀ ଥିଲେ । (ତାଙ୍କର ସଭାପତି ସମୟର କେତେକବର୍ଷ ପରେ ଯେଉଁ ସରକାରୀ କୃଷିସଂସ୍ଥା ଗଢ଼ା ଯାଇଥିଲା, ତାହାପରେ ମାର୍କିଣ ଯୁକ୍ତରାଷ୍ଟ୍ରର କୃଷିସଂସ୍ଥା ହିସାବରେ ଦେଖାଦେଲା) ୧୮୫୯ ମସିହା ସେପ୍ଟେମ୍ବର ମାସରେ ମାଡସିନ ଠାରେ ଅନୁଷ୍ଠିତ ହୋଇଥିବା **Wisconsin** ପ୍ରଦେଶର କୃଷିସମାଜର ବାର୍ଷିକ ଅଧିବେଶନରେ ସେ ଭାଷଣ ଦେଇଥିଲେ । ତାଙ୍କ ଭାଷଣର ଉଦ୍ଧୃତାଂଶ ମଧ୍ୟରେ ଦେଖାଯାଏ ଯେ ସେ କୃଷି ଶିକ୍ଷାକୁ ଖୁବ୍ ଆଦର କରୁଥିଲେ— ତାହା ପୂର୍ବରୁ କୃଷି ଶିକ୍ଷା କ୍ରମେ କ୍ରମେ ଉନ୍ନତିଲାଭ କରୁଥିଲା ।

...କୃଷିକାର୍ଯ୍ୟ ଗବେଷଣାମୂଳକ ଭାବରେ ଯେପରି ଶ୍ରମର ବିନିଯୋଗ କରି ଲାଭବାନ ହୋଇ ପାରିଅଛି ଅନ୍ୟ କୌଣସି ମାନବୀୟ କାର୍ଯ୍ୟକ୍ରମରେ ଶ୍ରମର ଏପରି ବିନିଯୋଗ ହୋଇ ପାରିନାହିଁ । ଯେ କୌଣସି ଆବିଷ୍କୃତ ପଦାର୍ଥ ଯେପରି ପ୍ରଥମେ "ନୂତନ" ଓ "ମୂଲ୍ୟବାନ" ତାହାଛଡ଼ା ଅନ୍ୟ କୌଣସି ଆବିଷ୍କୃତ ପଦାର୍ଥ ମୋ ମନରେ ଏତେ ଆନନ୍ଦଦାନ କରିପାରେ ନାହିଁ । ଏ ପ୍ରକାର ଆବିଷ୍କାର ଭଳି ଅନ୍ୟ କୌଣସି ଆବିଷ୍କାର ଶ୍ରମର ଉପଯୁକ୍ତ ମୂଲ୍ୟ ଦେଇ ମନରେ ଏତେ ଆନନ୍ଦ ଓ ମଧୁର ଭାବ ଦାନ କରି ପାରେନାହିଁ । ଏହି ପ୍ରକାର ଆବିଷ୍କାର ପାଇଁ କୃଷିକ୍ଷେତ୍ରର ପରିସର ଖୁବ୍ ବେଶି ଏବଂ ବିବିଧ । ସ୍ଥାନୀୟ ତଥା ଉଚ୍ଚ ଶିକ୍ଷାୟତନରେ ଯେଉଁମାନଙ୍କର ମୁଣ୍ଡ ଏ ବିଷୟରେ ଶିକ୍ଷାଦାନ କରିବାରେ ଭାରାକ୍ରାନ୍ତ ସେମାନେ ଏହା ମଧ୍ୟରୁ ସର୍ବଦା ଆନନ୍ଦ ଅନୁଭବ କରିବାରେ ନିରାଶ ହେଉ ନଥିବେ । ତୃଣର ପ୍ରତ୍ୟେକ ପତ୍ର ଓ ଫଳରୁହିଁ ଶିକ୍ଷା ମିଳେ । ଦୁଇଟି ଉତ୍ପନ୍ନ କରିବାକୁ ମାତ୍ର ଗୋଟିକର ଆବଶ୍ୟକ ହୋଇଥାଏ, କିନ୍ତୁ ଦୁଇଟିଯାକ ଲାଭକର ଓ ଆନନ୍ଦ ଦାୟକ ।

କେବଳମାତ୍ର ତୃଣ ନୁହେଁ, ଆହୁରି ମଧ୍ୟ ମାଟି, ବୀଜ ଓ ଉପଯୁକ୍ତ ସମୟ ; ବାଡ଼, ପୟଃପ୍ରଣାଳୀ ଓ ଉପଯୁକ୍ତ ବେଢ଼ା ; ଜଳ ନିଷ୍କାସନ, ଜଳାଭାବ ଓ ଜଳ ସେଚନ ; କର୍ଷଣ, ବାଛିବା ଓ ମଇ ଦେବା ; କାଟିବା, ଅମଳ କରିବା ଓ ସଞ୍ଚୟ କରିବା ; ଶସ୍ୟଗୁଡ଼ିକୁ ପୋକ ଏବଂ ରୋଗ ଦାଉରୁ କିପରି ରକ୍ଷା କରିବା କିମ୍ବା ମୁକ୍ତ କରିବା, ଯନ୍ତ୍ରପାତି, ବାସନପତ୍ର ଏବଂ କଳକବ୍ଜା ଗୁଡ଼ିକର ଉପଯୋଗିତା, ସେ ଗୁଡ଼ିକର ଉପକାରିତା ଏବଂ କିପରି ସେ ଗୁଡ଼ିକୁ ଉନ୍ନତ କରାଯିବ ; ଘୁଷୁରୀ, ଘୋଡ଼ା ଏବଂ ଗୋରୁ, ମେଣ୍ଢା, ଛେଳି ଏବଂ କୁକୁଡ଼ା ; ବୃକ୍ଷ, ଲତା, ଫଳ ଏବଂ ଫୁଲ ପ୍ରଭୃତି ଅନ୍ୟାନ୍ୟ ହଜାର ହଜାର ପଦାର୍ଥ ମଧ୍ୟରୁ ଏଗୁଡ଼ିକ କେବଳମାତ୍ର ଆଦର୍ଶ ସ୍ୱରୂପ ଏବଂ ପ୍ରତ୍ୟେକ ପଦାର୍ଥରେ ବ୍ୟାପକ ଭାବରେ ଶିକ୍ଷା କରିବାର ରହିଅଛି । ପ୍ରତ୍ୟେକ ବିଷୟରେ ଶିକ୍ଷା କରିବାକୁ ପୁସ୍ତକ ରହିଅଛି । ଅନ୍ୟାନ୍ୟମାନଙ୍କ ଦ୍ୱାରା ଯାହାସବୁ ଆବିଷ୍କୃତ ହୋଇଅଛି ଶକ୍ତି ଏବଂ ଶିକ୍ଷା ତନ୍ମଧ୍ୟରେ ପ୍ରବେଶ କରିବାକୁ ସୁବିଧା ଦିଏ । ସମାଧାନ ହୋଇଥିବା ସମସ୍ୟା ଗୁଡ଼ିକର ଏହା ହେଉଛି ଅନ୍ୟତମ ଚାବିକାଠି । କେବଳମାତ୍ର ଏତିକି ନୁହେଁ, ଆହୁରି ମଧ୍ୟ ଅମୀମାଂସିତ ସମସ୍ୟା ଗୁଡ଼ିକୁ ସମାଧାନ କରିବାରେ ସାହାଯ୍ୟ କରେ । ବିଜ୍ଞାନର ମୂଳତତ୍ତ୍ୱ ବ୍ୟବହାର ଯୋଗ୍ୟ ଏବଂ ଯଥେଷ୍ଟ ମୂଲ୍ୟବାନ । ଉଦ୍ଭିଦ ବିଦ୍ୟା ସମ୍ବନ୍ଧରେ ସାମୟିକ ଜ୍ଞାନ ଉଦ୍ଭିଦ ଜଗତ ସହିତ ସମ୍ପର୍କ ସ୍ଥାପନ କରିବାରେ ସାହାଯ୍ୟ କରେ—ସମସ୍ତ ବଢ଼ୁଥିବା ଶସ୍ୟ ସହିତ ; ରସାୟନ ବିଦ୍ୟା ମାଟିକୁ ରସଯୁକ୍ତ ସାର ଦାନ କରିବାର ବ୍ୟବସ୍ଥା କରେ ଏବଂ ଆହୁରି ଅନେକ ଉପାୟରେ ସାହାଯ୍ୟ କରେ । ସମସ୍ତ କାର୍ଯ୍ୟରେ ଯନ୍ତ୍ରବିଦ୍ୟା ସହାୟକ ବିଶେଷତଃ ଯନ୍ତ୍ରପାତି ଏବଂ କଳକବ୍ଜା ବ୍ୟବହାର କରିବା ସମ୍ବନ୍ଧରେ ଏହାର ସାହାଯ୍ୟ ଅପରିହାର୍ଯ୍ୟ ।

ଶିକ୍ଷାରେ ଭାବନାର ଉଦ୍ରେକ ହୁଏ—ଗବେଷଣା ମୂଳକ ଭାବନା କୃଷିଜୀବୀ ଶ୍ରମିକ କିମ୍ବା ଅନ୍ୟ ଯେ କୌଣସି ଶ୍ରମିକର ଶ୍ରମକୁ "ଉପଯୁକ୍ତ ବିନିଯୋଗ କରେ, କିନ୍ତୁ ଯତ୍ନହୀନ ଏବଂ ଅର୍ଦ୍ଧସମାପ୍ତ କିମ୍ବା ବିଶୃଙ୍ଖଳ କାର୍ଯ୍ୟରେ ଏ ପ୍ରକାର ଯୋଗାଯୋଗର ସ୍ଥାନ ନାହିଁ । ପୂର୍ଣ୍ଣାଙ୍ଗ କାର୍ଯ୍ୟ ପ୍ରଚୁର ଭାବରେ କାର୍ଯ୍ୟରେ ଆସି ପ୍ରତ୍ୟେକ ଲୋକଙ୍କୁ ଅଳ୍ପ ପରିମାଣରେ ସ୍ଥାନ ଦିଏ । ଏବଂ ଏହା ପୁଣି ବାଦ ବିବାଦ ସମାଧାନ କରି ଅନୁକୂଳ ବାୟୁମଣ୍ଡଳ ସୃଷ୍ଟିକରେ । ଲୋକ ସଂଖ୍ୟା ପୂର୍ବାପେକ୍ଷା ଯଥେଷ୍ଟ ପରିମାଣରେ ବଢ଼ି ଚାଲିଛି—ଅପେକ୍ଷାକୃତ ମୂଲ୍ୟବାନ କଳା ମଧ୍ୟରେ ଜୀବନ ଧାରଣରେ ଏକମାତ୍ର ଯେଉଁ କଳା ବିଦ୍ୟା ସାହାଯ୍ୟ କରେ, ତାହା ହେଉଛି ଛୋଟ ଛୋଟ ଜମିରୁ ଜୀବନଧାରଣ ପାଇଁ ଶସ୍ୟ ଉତ୍ପାଦନ କରିବାର କଳା ।

ଯେଉଁ ସଂପ୍ରଦାୟର ପ୍ରତ୍ୟେକ ଲୋକ ଏହି କଳାରେ ନିପୁଣ, ସେମାନେ କେବେହେଲେ କାହାର ଅତ୍ୟାଚାରରେ ଶୋଷିତ ହେବେନାହିଁ । ସେହି ସଂପ୍ରଦାୟ ରାଜା, ଧନୀ ଓ ଜମିଦାର ପ୍ରଭୃତିଙ୍କ ଭଳି ସ୍ୱାଧୀନ ହେବ········· ।

## ଗୋଟିଏ ଆତ୍ମବୃତ୍ତାନ୍ତ

ସଭାପତି ପଦ ପାଇଁ ସମ୍ଭାବନାମୟ ପ୍ରାର୍ଥୀ ହିସାବରେ ଲିଙ୍କନଙ୍କ ଠାରେ ଜନସାଧାରଣଙ୍କର ଆସ୍ଥା ବଢ଼ିବାରୁ ତାଙ୍କର ଜୀବନଚରିତ ସହିତ ଜନସାଧାରଣ ଭଲ ଭାବରେ ପରିଚିତ ହେବାକୁ ଅନୁରୋଧ କଲେ । ତାଙ୍କର ଜଣେକ ବନ୍ଧୁଙ୍କ ଅନୁରୋଧକ୍ରମେ ସେ ଖୁବ୍ ସଂକ୍ଷେପରେ ତାଙ୍କର ଜୀବନ ଚରିତ ଲେଖିଥିଲେ ।

ମୁଁ ୧୮୦୯ ମସିହା ଫେବୃୟାରୀ ମାସରେ କେଣ୍ଟୁକୀର ହାର୍ଡ଼ିନ୍ ଦେଶରେ ଜନ୍ମ ଗ୍ରହଣ କରିଥିଲି । ମୋର ପିତା ମାତା ଉଭୟ ଭର୍ଜିନିଆର ଏକ ଅପ୍ରସିଦ୍ଧ ପରିବାରରେ ଜନ୍ମଗ୍ରହଣ କରିଥିଲେ—ନିମ୍ନଧରଣର ପରିବାର ବୋଲି ମୁଁ କହିପାରେ । ମୋତେ ଯେତେବେଳେ ଦଶବର୍ଷ, ମା' ମରିଗଲେ । ସେ ହାଙ୍କସ ପରିବାରରେ ଜନ୍ମଗ୍ରହଣ କରିଥିଲେ, ଯେଉଁ ପରିବାରର କେତେକ ଲୋକ ବର୍ତ୍ତମାନ ଆଡ଼ାମସରେ ଦେଖାଯାନ୍ତି ଏବଂ ଅନ୍ୟ କେତେକ ଇଲିନୟସର ମାକନ ଦେଶରେ ଦେଖାଯାନ୍ତି । ମୋର ସାମନ୍ତପିତା ଆବ୍ରାହମ ଲିଙ୍କନ ଭର୍ଜିନୟାସ୍ଥ ରକିଙ୍ଗ୍‌ହାମ ଦେଶ ତ୍ୟାଗକରି କେଣ୍ଟୁକୀକୁ ୧୭୮୧-୮୨ରେ ସ୍ଥାନାନ୍ତରିତ ହୋଇଥିଲେ । ସେଠାରେ ବର୍ଷେ କିମ୍ବା ଦୁଇବର୍ଷ ପରେ ସେ ଥରେ ଜଙ୍ଗଲ ପରିଷ୍କାର କରି କୃଷିକ୍ଷେତ୍ର ପ୍ରସ୍ତୁତ କରିବା ସମୟରେ ଇଣ୍ଡିୟାନାମାନେ ତାଙ୍କ ସହିତ ଯୁଦ୍ଧ ନ କରି ଲୁକ୍‌କାୟିତ ଭାବରେ ହତ୍ୟା କଲେ । ସେମାନଙ୍କ ପୂର୍ବପୁରୁଷମାନେ ଯେଉଁମାନେ କ୍ୟୁୟେକାରସ୍ (Quakers) ନାମରେ ପରିଚିତ ଥିଲେ । ସେମାନେ ପେନ୍‌ସିଲଭେନିୟାର ବେରକସ ଦେଶର ଭର୍ଜିନୟାକୁ ଗଲେ । ନିୟୁଇଂଲଣ୍ଡ ବଂଶ ସହିତ ସେମାନଙ୍କର ଖ୍ରୀଷ୍ଟିୟାନ ନାମରେ ସାମଞ୍ଜସ୍ୟ ରହିଅଛି । ଯଥା ଏନ୍ଙ୍କ, ଲେଭି, ମରଦେକାୟି, ସୋଲୋମନ, ଆବ୍ରାହମ ଇତ୍ୟାଦି ଇତ୍ୟାଦି ।

ମୋର ପିତାଙ୍କୁ ଯେତେବେଳେ ୬ ବର୍ଷ ସେତେବେଳେ ମୋର ସାମନ୍ତପିତା ଇହଧାମ ତ୍ୟାଗକଲେ ; ଏବଂ ମୋର ପିତା ବିନା ଶିକ୍ଷାରେ ଭଦ୍ର ଭାବରେ ବଢ଼ିଲେ । ମୋତେ ୮ବର୍ଷ ବୟସବେଳେ ସେ ଇଣ୍ଡିୟାନାର ସ୍ପିନସର ଦେଶକୁ କେଣ୍ଟୁକୀରୁ ସ୍ଥାନାନ୍ତରିତ ହେଲେ । ଆମ୍ଭେ ଆମ୍ଭର ନୂତନ ଗୃହରେ ପହଞ୍ଚିବାବେଳେ ପ୍ରଦେଶଟି ରାଷ୍ଟ୍ର ସଂଘରେ ଯୁକ୍ତହେଲା । ଏହା ଏକ ଅରଣ୍ୟମୟ ସ୍ଥାନଥିଲା । ଭାଲୁ ଏବଂ ଅନ୍ୟାନ୍ୟ ବଣ୍ୟ ପଶୁମାନେ ଆଜି ପର୍ଯ୍ୟନ୍ତ ଏହି ଜଙ୍ଗଲରେ ଦେଖାଯାଆନ୍ତି । ଏହିଠାରେ ମୁଁ ବଢ଼ିବାକୁ ଲାଗିଲି । ସେଠାରେ ନାମକୁ ମାତ୍ର କେତେକ ସ୍କୁଲଥିଲା ; କିନ୍ତୁ କୌଣସି ଶିକ୍ଷକଙ୍କର ଯୋଗ୍ୟତା "ଲେଖା ପଢ଼ା ଏବଂ ଅଙ୍କ କଷିବା"ର ତୈରାଶିକ ନିୟମର ବାହାରେ ନଥିଲା । ମନେକର, ଜଣେ

ଲାଟିନ ଜାଣିଥିବା ପର୍ଯ୍ୟଟନକାରୀ ନିକଟବର୍ତ୍ତୀ ଅଞ୍ଚଳରେ ଅଳ୍ପ ସମୟ ପାଇଁ ଭ୍ରମଣ କରିବାକୁ ଗଲେ ତାଙ୍କୁ ଲୋକମାନେ ଯାଦୁକର ବୋଲି ଭାବୁଥିଲେ। ସେତେବେଳେ ଶିକ୍ଷା ପାଇଁ ବିଶେଷ ଆଗ୍ରହ ନଥିଲା। ଅବଶ୍ୟ ଯେତେବେଳେ ମୁଁ ବଡ଼ି ଯାଇଥିଲି ସେତେବେଳେ ମୁଁ ବେଶିକିଛି ଜାଣି ନଥିଲି। ତଥାପି କୌଣସି ଉପାୟରେ ମୁଁ ପଢ଼ି ଲେଖି ପାରିଲି ଏବଂ ଅଙ୍କର ତ୍ରୈରାଶିକ ନିୟମ ଜାଣି ପାରିଲି, କିନ୍ତୁ ସେତିକିରେ ସମସ୍ତ ସମାପ୍ତ। ଆବଶ୍ୟକତାର ଚାପରେ ପଡ଼ି ମୁଁ କ୍ରମେ କ୍ରମେ ଶିକ୍ଷାର ଏହି ଅବସ୍ଥାରେ ପହଞ୍ଚିଅଛି।

କୃଷିକ୍ଷେତ୍ରରେ ୨୨ ବର୍ଷ ପର୍ଯ୍ୟନ୍ତ କାର୍ଯ୍ୟରେ ସଂପୃକ୍ତ ଥିଲି। ୨୧ ବର୍ଷ ବୟସରେ ମୁଁ ଇଲିନୟସକୁ ଆସିଲି ଏବଂ ମେକନ ଦେଶରେ ପ୍ରଥମ ବର୍ଷ ଅତିବାହିତ କଲି। ତତ୍‌ପରେ ନିଉ ସାଲେମକୁ ଗଲି (ବର୍ତ୍ତମାନ ମେକନ ଦେଶରେ ଅବସ୍ଥିତ ସାଙ୍ଗାମନ ଠାରେ ଗୋଟିଏ ଗୋଦାମରେ କିରାଣି ହୋଇ ରହିଲି। ତତ୍‌ପରେ ବ୍ଲାକ-ହକ (Black-Hock) ଯୁଦ୍ଧ ହେଲା; ମୁଁ ସ୍ୱେଚ୍ଛାସେବକ-ବାହିନୀର ଦଳପତି ହିସାବରେ ନିଯୁକ୍ତ ହେଲି—ସେହି ଯୁଦ୍ଧର କୃତକାର୍ଯ୍ୟ ହେବାର ଫଳ ମୋ ମନରେ ଅଭୂତପୂର୍ବ ଆନନ୍ଦ ଦାନକଲା। ମିଳିତ ଭାବରେ ୧୮୩୨ ମସିହାରେ ବ୍ୟବସ୍ଥାପକ ପଦପାଇଁ ପ୍ରତିଦ୍ୱନ୍ଦୀତା କରି ପରାଜିତ ହେଲି—ଲୋକମାନଙ୍କ ଦ୍ୱାରା ଆଘାତପ୍ରାପ୍ତ ହେବା ଏହା ହେଉଛି ମୋର ପ୍ରଥମ ଥର। ପରବର୍ତ୍ତୀ ଦୁଇବର୍ଷିଆ ନିର୍ବାଚନରେ ତିନିଥର ମୁଁ ବ୍ୟବସ୍ଥାପକ ସଭାର ସଦସ୍ୟରୂପେ ନିଯୁକ୍ତ ହେଲି। ଏହାପରେ ମୁଁ ଆଉ ସଦସ୍ୟ ନଥିଲି। ଏହି ବ୍ୟବସ୍ଥାପକ ସଭାର ସଭ୍ୟ ଥିବା ସମୟରେ ମୁଁ ଆଇନ ଶାସ୍ତ୍ର ଅଧ୍ୟୟନ କଲି ଏବଂ ସ୍ପ୍ରିଂଫିଲ୍‌ଡକୁ ଆଇନଶାସ୍ତ୍ର ଅଭ୍ୟାସ କରିବାକୁ ସ୍ଥାନାନ୍ତରିତ ହେଲି। ୧୮୪୬ ମସିହାରେ କଂଗ୍ରେସର ନିମ୍ନ ସଭାକୁ ପ୍ରାର୍ଥୀ ହିସାବରେ ନିର୍ବାଚିତ ହେଲି। ପୁନଃନିର୍ବାଚନରେ ମୁଁ ପ୍ରାର୍ଥୀ ନଥିଲି। ୧୮୪୯ ମସିହାରୁ ୧୮୫୪ ମସିହା ପର୍ଯ୍ୟନ୍ତ ଆଇନ ବ୍ୟବସାୟରେ ମଗ୍ନଥିଲି। ରାଜନୀତିରେ ମୁ ଚିରକାଳ ହ୍ୱିଗପନ୍ଥୀ; ଏବଂ ସାଧାରଣତ ମୁଁ ହ୍ୱିଗ ଦଳରେ ରହି ପ୍ରତିଦ୍ୱନ୍ଦିତା କରୁଥିଲି ଏବଂ ପ୍ରଚାର ମଧ୍ୟ କରୁଥିଲି। ରାଜନୀତି ସମ୍ପର୍କରେ ଆଗ୍ରହ ଚାଲି ଯାଇଥିଲା ଏପରି ସମୟରେ ମିଜୁରୀ ଚୁକ୍ତିର (Missouri Compromise) ପ୍ରତ୍ୟାହାର ଫଳରେ ମୁଁ ପୁନରାୟ ସକ୍ରିୟ ହୋଇ ଉଠିଲି।

ଯଦି ମୋର ବ୍ୟକ୍ତିଗତ ପରିଚୟରେ କିଛି ପ୍ରୟୋଜନ ହୁଏ ତାହାହେଲେ କୁହାଯାଇ ପାରେ ଯେ ମୁଁ ଉଚ୍ଚତାରେ ପ୍ରାୟ ଛଅଫୁଟ ଚାରିଇଞ୍ଚ, କୃଶକାୟ—ଓଜନ ୧୮୦ ପାଉଣ୍ଡ, ମୁଖର ବର୍ଣ୍ଣ କଳା, କର୍କଶ କଳାଚୁଳ, ଧୂସର ଚକ୍ଷୁ—କୌଣସି ବିଶେଷ ଚିହ୍ନର ନିଦର୍ଶନ ଅଛିବୋଲି ମନେ ହେଉ ନାହିଁ।

## ଶାସନ ନୀତି (Philosophy of Government)

ଲିଙ୍କନ ଶାସନନୀତି ସମ୍ପର୍କରେ ବିଶେଷ ଭାବରେ ମାର୍କିଣ ଯୁକ୍ତରାଷ୍ଟ୍ରରେ ତାହାର କାର୍ଯ୍ୟକାରିତା ସମ୍ପର୍କରେ ବିଶେଷଭାବରେ ଚିନ୍ତା କରୁଥିଲେ। ୧୮୬୦ ମସିହାରେ ଲିଖିତ ଗୋଟିଏ ଅଂଶରେ ସେ ତାଙ୍କର ଚିନ୍ତାଧାରାକୁ ଲିପିବଦ୍ଧ କରିଥିଲେ।

ଏହି ସମସ୍ତ କୌଣସି ଆକସ୍ମିକ ଘଟଣାର ଫଳ ନୁହେଁ। ଏହାର ଗୋଟିଏ ନୀତିଗତ କାରଣ ରହିଅଛି। ସମ୍ବିଧାନ ଏବଂ ଇଉନିୟନ ବ୍ୟତୀତ ଆମ୍ଭେମାନେ ଏହି ସମସ୍ତ ଫଳ ଉପଭୋଗ କରିପାରି ନଥାନ୍ତେ। କିନ୍ତୁ ଏଗୁଡ଼ିକ ଆମ୍ଭମାନଙ୍କର ମହାନ ସମୃଦ୍ଧିର ପ୍ରାଥମିକ କାରଣ ନୁହେଁ। ଏହି ଗୁଡ଼ିକର ପଛରେ ଆଉ କିଛି ରହିଅଛି ଯେଉଁ ଗୁଡ଼ିକ ମାନବ ହୃଦୟକୁ ଘନିଷ୍ଠଭାବେ ବାନ୍ଧି ରଖିଅଛି। ସେହି ଜିନିଷଟି ହେଉଛି "ସମସ୍ତଙ୍କ ପାଇଁ ଯେଉଁ ନୀତି ସମସ୍ତଙ୍କର "ପଥ" ପରିଷ୍କାର କରେ,—ସମସ୍ତଙ୍କୁ "ଆଶା" ଦିଏ—ଏବଂ ଫଳରେ ସମସ୍ତଙ୍କ ମଧ୍ୟରେ ସ୍ୱାଧୀନତା" ର ନୀତି—"ଉଦ୍ୟମ" ଏବଂ "ଅଧ୍ୟବସାୟ" ସୃଷ୍ଟି କରେ।

ଆମ୍ଭମାନଙ୍କର ସ୍ୱାଧୀନତାର ଘୋଷଣା ପତ୍ରରେ ସେହି ନୀତିର ପ୍ରକାଶ ସର୍ବାପେକ୍ଷା ଆନନ୍ଦ ଏବଂ ସୌଭାଗ୍ୟର ବିଷୟ। ଏହି ନୀତି ଭିତରୁ ଓ ଏହି ନୀତି ବ୍ୟତୀତ, ଆମ୍ଭେମାନେ ଗ୍ରେଟ ବ୍ରିଟେନ ଠାରୁ ସ୍ୱାତନ୍ତ୍ର୍ୟ ଘୋଷଣା କରି ପାରିଥାନ୍ତେ, କିନ୍ତୁ ମୋର ବିଶ୍ୱାସ ଏହା ବ୍ୟତୀତ ଆମ୍ଭେମାନେ ସ୍ୱାଧୀନ ସରକାର ପ୍ରତିଷ୍ଠା କରି ପାରିନଥାନ୍ତେ ଏବଂ ଫଳରେ ଏହି ପ୍ରକାର ସମୃଦ୍ଧି ହୋଇ ପାରି ନଥାନ୍ତା। କେବଳମାତ୍ର ଶାସକ ପରିବର୍ତ୍ତନ ବ୍ୟତୀତ ଅନ୍ୟ କୌଣସି ଭଲ ବ୍ୟବସ୍ଥାର ଆଶ୍ୱାସ ନ ରଖିଲେ ଆମ୍ଭମାନଙ୍କର ପିତୃ-ପୁରୁଷମାନଙ୍କ ଭଳି କୌଣସି ନିପୀଡ଼ିତ ଜାତି "ଯୁଦ୍ଧ" କରିବାକୁ ସକ୍ଷମ ହେବନାହିଁ ବା ସେହି ଯୁଦ୍ଧରେ "ଜୟଲାଭ" କରି ପାରିବ ନାହିଁ।

ସେହି ସମୟରେ ଏହି ନୀତିର ଘୋଷଣା "ଉପଯୁକ୍ତ ଭାବରେ କୁହାହିଏ" ଏହି ବାକ୍ୟଟି ଦ୍ୱାରା ଆମ୍ଭମାନଙ୍କ ନିକଟରେ ଏହା "ସୁବର୍ଣ୍ଣ ଆପେଲ" ବୋଲି ପ୍ରମାଣିତ ହୋଇଅଛି। ଇଉନିୟନ ଏବଂ ସମ୍ବିଧାନ ରୌପ୍ୟ ପ୍ରତିମୂର୍ତ୍ତି ସଦୃଶ କାଳକ୍ରମେ ଏହାକୁ ବେଷ୍ଟନ କରା ହୋଇଅଛି। ଆପେଲଟିକୁ ଲୁଚାଇବା ପାଇଁ କିମ୍ବା ଧ୍ୱଂସ କରିବା ପାଇଁ ଛବିଟି ତିଆରି ହୁଏନାହିଁ; ତିଆରି ହୋଇଥାଏ ଏହାକୁ ସଂରକ୍ଷଣ କରିବା ପାଇଁ ଏବଂ ଏହାର ଶୋଭା ବର୍ଦ୍ଧନ ପାଇଁ। ଛବିଟି ତିଆରି ହୋଇଥାଏ ଆପେଲ ପାଇଁ କିନ୍ତୁ ଆପେଲ ଛବିପାଇଁ ନୁହେଁ।

ଅତଏବ ଆମ୍ଭେମାନେ ଆସ ଏପରି ଭାବରେ କାର୍ଯ୍ୟ କରିବା, ଯାହାଦ୍ୱାରା ଛବି ବା ଆପେଲ କୌଣସିଟି ମଳିନ ନ ହୋଇଯାଏ ବା ଭାଙ୍ଗି ନପଡ଼େ।

ଆମ୍ଭେମାନେ ଏପରି ଭାବରେ କାର୍ଯ୍ୟ କରିବା ଯେପରି ବିପଜ୍ଜନକ ସ୍ଥାନ ଗୁଡ଼ିକରୁ ଜାଣିବା ଏବଂ ସେ ସମ୍ପର୍କରେ ଆଲୋଚନା କରିବା ପ୍ରୟୋଜନ।

## କୁପାର ଇନଷ୍ଟିଚ୍ୟୁଟରେ ଭାଷଣ

ଇତିହାସରେ "ମହାନ ମୁକ୍ତିଦାତା" ହିସାବରେ ସୁପରିଚିତ ହେଲେ ଲିଙ୍କନ—ଯେଉଁ ଦାସମାନଙ୍କୁ ମୁକ୍ତିଦାନ କରି ମାର୍କିଣ ଯୁକ୍ତରାଷ୍ଟ୍ରରୁ କଳଙ୍କଜନକ ଦାସ ପ୍ରଥାର ବିଲୋପ ସାଧନ କରିଥିଲେ—ଗୃହ ଯୁଦ୍ଧର ପୂର୍ବବର୍ତ୍ତୀ ବର୍ଷ ସମୂହରେ ତାଙ୍କର ଲକ୍ଷ୍ୟ ଥିଲା ସରକାରୀ ବିଧାନର ସାହାଯ୍ୟରେ ଦାସପ୍ରଥାର ପ୍ରତ୍ୟକ୍ଷ ଅବସାନ ଅପେକ୍ଷା ମାନବିକ ସଭ୍ୟତାର ଅଗ୍ରଗତି

ସାହାଯ୍ୟରେ ତାହାର ଅବଲୁପ୍ତି ଘଟାଇବା । ଏହାର ପଛରେ ଏହି ଆଶା ଥିଲା ଯେ ଦାସରାଷ୍ଟ୍ର ଗୁଡ଼ିକର ଇଚ୍ଛା ନଥିଲେ ସୁଦ୍ଧା ଏହି କାର୍ଯ୍ୟକ୍ରମ ଗ୍ରହଣ କରିବ ଏବଂ ଇଉନିୟନ ରକ୍ଷା ପାଇବ । ତଥାପି ଦାସପ୍ରଥାର ନୈତିକତା ସମ୍ପର୍କରେ ତାଙ୍କର ନିନାଦିତ କଣ୍ଠସ୍ୱର ସମଗ୍ର ଦେଶ ତମାମ ପ୍ରତିଧ୍ୱନିତ ହୋଇଥିଲା । ଗୋଟିଏ ଭାଷଣ ବିଶେଷ ଭାବରେ ଜନପ୍ରିୟତା ଲାଭ-କରେ, ସେ ପୂର୍ବ ଦିଗରୁ ଯେତେବେଳେ ଆସନ୍ତି ସେତେବେଳେ କୁପାର ଇନଷ୍ଟିଟିଉଟରେ ରିପବ୍ଲିକାନଙ୍କର ଗୋଟିଏ ସଭାରେ ବକ୍ତୃତାଟି ଦିଅନ୍ତି । ଏହି ବକ୍ତୃତାର ଶେଷରେ କୁହାହୁଏ :

ଯଦି ଦାସପ୍ରଥା ନ୍ୟାୟସଙ୍ଗତ ହୁଏ, ତେବେ ତାହା ବିରୁଦ୍ଧରେ ଯେତେ କଥା, କାର୍ଯ୍ୟ, ଆଇନ ଏବଂ ସମ୍ବିଧାନ ଅଛି ସେ ସମସ୍ତ ଭୁଲ ଏବଂ ସେଗୁଡ଼ିକୁ ଶୁଦ୍ଧ କରିବା ଉଚିତ, ସେ ଗୁଡ଼ିକୁ ଉଚ୍ଛେଦ କରିବା ଉଚିତ । ଯଦି ଏହା ନ୍ୟାୟସଙ୍ଗତ ହୁଏ ତେବେ ଏହାର ଜାତୀୟତା—ଏହାର ବିସ୍ତାରକାମନତା ସମ୍ପର୍କରେ ଯୁକ୍ତିସଙ୍ଗତଭାବେ ଆପତ୍ତି କରିପାରିବା ନାହିଁ । ଯଦି ଆମ୍ଭେମାନେ ମନେକରୁଁ ଦାସପ୍ରଥା ଯଥାର୍ଥ, ତେବେ ସେମାନେ ଯାହା ଚାହାଁନ୍ତି ଆମ୍ଭେମାନେ ତତ୍‌କ୍ଷଣାତ୍ ସେମାନଙ୍କୁ ତାହା ଦେଇ ପାରନ୍ତି ; ଯଦି ସେମାନେ ଏହାକୁ ଅନ୍ୟାୟ ମନେ କରନ୍ତି ତେବେ ଆମ୍ଭେମାନେ ଯାହା ଚାହୁଁ ସେମାନେ ମଧ୍ୟ ସେହିପରି ଭାବରେ ଦେଇ ପାରନ୍ତେ । ଏହାକୁ ସେମାନେ ଠିକ ମନେ କରନ୍ତି, ଆମ୍ଭେମାନେ ମନେକରୁ ଭୁଲ—ଏହିଠାରେ ବିରୋଧର ଉତ୍ପତ୍ତି । ସେମାନେ ଯଦି ଏହାକୁ ଠିକ ମନେକରି ଏହାର ଯଥାର୍ଥ ପ୍ରତିଷ୍ଠା କରିବାକୁ ଚାହାଁନ୍ତି ତେବେ ସେମାନଙ୍କୁ ଦୋଷ ଦିଆଯିବ ନାହିଁ, କିନ୍ତୁ ଆମ୍ଭେମାନେ ଏହାକୁ ଅନ୍ୟାୟ ଜାଣି ସେମାନଙ୍କର ନୀତିକୁ ସ୍ୱୀକାର କରିପାରିବା କି ? ଆମ୍ଭେମାନେ ଆମ୍ଭମାନଙ୍କ ନିଜନିଜ ବିରୁଦ୍ଧରେ, ସେମାନଙ୍କର ସପକ୍ଷରେ, ଭୋଟ ଦେଇ ପାରିବା କି ? ଆମ୍ଭମାନଙ୍କର ନୈତିକ, ସାମାଜିକ ଏବଂ ରାଜନୈତିକ ଦାୟିତ୍ୱର କଥା ବିବେଚନା କରି ଆମ୍ଭେମାନେ ତାହା କରିପାରିବା କି ?

ଯଦିଓ ଆମ୍ଭେମାନେ ଦାସପ୍ରଥା ଅନ୍ୟାୟ ବୋଲି ମନେକରୁଁ, ରାଷ୍ଟ୍ରରେ ଏହାର ବାସ୍ତବ ଉପସ୍ଥିତିର ପ୍ରତିଧ୍ୟାନରେ ଆମ୍ଭେମାନେ ଏହାକୁ ସ୍ୱସ୍ଥାନରେ କେବଳମାତ୍ର ରଖି ପାରନ୍ତି । କିନ୍ତୁ ଆମ୍ଭମାନଙ୍କର ଭୋଟ ଦ୍ୱାରା ଏହା ନିରୋଧର କ୍ଷମତା ଅଛି ବୋଲି ଜାଣି ସୁଦ୍ଧା ଆମ୍ଭେମାନେ କି ଦେଶ ମଧ୍ୟରେ ଏବଂ ଆମ୍ଭମାନଙ୍କର ସ୍ୱାଧୀନ ରାଷ୍ଟ୍ର ସମୂହରେ ଏହାର ପ୍ରସାରକୁ ବ୍ୟାହତ ରଖି ପାରିବୁଁ ? ଯଦି ଆମ୍ଭମାନଙ୍କର କର୍ତ୍ତବ୍ୟବୋଧ ଆମ୍ଭମାନଙ୍କୁ ଏହା ମଧ୍ୟରୁ ନିବୃତ୍ତ କରେ, ତେବେ ଆସନ୍ତୁ ଆମ୍ଭେମାନେ ନିର୍ଭୀକ ଚିତ୍ତରେ ଏବଂ ବଳିଷ୍ଠ ଭାବରେ ଆମ୍ଭମାନଙ୍କର କର୍ତ୍ତବ୍ୟ ପାଳନ କରିବା । ଯେଉଁ ସବୁ କୁଯୁକ୍ତିପୂର୍ଣ୍ଣ ଉପାୟରେ ଆମ୍ଭମାନଙ୍କୁ ବିପର୍ଯ୍ୟସ୍ତ କରାହୋଇ ଅଛି ଆମ୍ଭେମାନେ ଯେପରି ତାହା ମଧ୍ୟରୁ କୌଣସିଟି ଦ୍ୱାରା ନିର୍ଦ୍ଦିଷ୍ଟ ପଥରୁ ବିଚ୍ୟୁତ ନହେଉ । ଏହି କୁଯୁକ୍ତିଗୁଡ଼ିକ ହେଉଛି ନ୍ୟାୟ ଏବଂ ଅନ୍ୟାୟର ମଧ୍ୟମଣି କୌଣସି ପନ୍ଥା ଖୋଜିବା, ଜୀବିତ ନୁହେଁ କି ମୃତ ନୁହେଁ ଏପରି ମନୁଷ୍ୟର ସନ୍ଧାନ କରିବା ଭଳି ଯେଉଁମାନଙ୍କର ସନ୍ଧାନ ନିରର୍ଥକ; ଯେଉଁ ବିଷୟ ସମ୍ପର୍କରେ ପ୍ରକୃତ ମନୁଷ୍ୟ ଚିନ୍ତା କରେ, ସେ ବିଷୟରେ "ଚିନ୍ତା ନକରିବାର" ନୀତି, ପ୍ରକୃତ

ଇୟୁନିୟନ ପନ୍ଥୀ ଜନଗଣଙ୍କୁ ବିଭେଦ ପନ୍ଥୀ ନିକଟରେ ଆତ୍ମ ସମର୍ପଣ ପାଇଁ ଅନୁନୟ ଜଣାଇ, ଐଶ୍ୱରିକ ବିଧାନ ପରିବର୍ତ୍ତନ କରି—ପାପୀମାନଙ୍କର ଅନୁଶୋଚନା କରିବାକୁ ନକହି, ଓ୍ୱାସିଂଟନର ନାମ ନେଇ ଓ୍ୱାସିଂଟନ ଯାହା କହିଥିଲେ ତାକୁ ଅସ୍ୱୀକାର କରିବାକୁ ଏବଂ ଯାହା କରିଥିଲେ ତାହା ଧ୍ୱଂସ କରିବାକୁ ଜନଗଣ ନିକଟରେ କାକୁତି ମିନତି କରିବା ।

ଆମ୍ଭେମାନେ ଯେପରି ମିଥ୍ୟା ଅପବାଦର ଭୟରେ କର୍ତ୍ତବ୍ୟଚ୍ୟୁତ ନହେଉ, ବା ସରକାର ଧ୍ୱଂସରେ ବା କାରାଗାରରେ ନିକ୍ଷିପ୍ତ ହେବାର ଭୟରେ ଭୀତ ନହେଉଁ । ଆମ୍ଭ ମାନଙ୍କର ଯେପରି ସେହି ବିଶ୍ୱାସ ରହେ ଯେପରି ନ୍ୟାୟପଥରେ ଶକ୍ତି ଆହୃତ ହୁଏ ଏବଂ ଆମ୍ଭେମାନେ ଯେପରି ଅଟଳ ବିଶ୍ୱାସରେ ଶେଷ ପର୍ଯ୍ୟନ୍ତ ବିଚାର ବୁଦ୍ଧି ଅନୁଯାଇ କର୍ତ୍ତବ୍ୟ କରିଯିବାକୁ ସାହାସ ପାଇ ପାରିବା ।

# ୭ ସଭାପତିରୂପେ କାର୍ଯ୍ୟକାଳ



ୱାଶିଂଟନ ଡି, ସି' ର "ହ୍ୱାଇଟ ହାଉସରେ" ଅବ୍ରାହାମ ଲିଙ୍କନ ତାଙ୍କର "ମୁକ୍ତି ଘୋଷଣାର" ଖସଡ଼ାଟିକୁ ମନ୍ତ୍ରୀ ପରିଷଦ ସମ୍ମୁଖରେ ପାଠ କରି ଶୁଣାଇଲେ; ସେହି ଦୃଶ୍ୟଟି ଶିଳ୍ପୀର ପରିକଳ୍ପନା ଅନୁଯାୟୀ ଉପର ଛବିରେ ଦେଖା ହୋଇଛି ।

## ମନୋନୟନ ସ୍ୱୀକାର

୧୮୬୦ ମସିହା ମେ ମାସରେ ଇଲିନୟେସ୍ ଅନ୍ତର୍ଗତ ଶିକାଗୋରେ ଅନୁଷ୍ଠିତ ରିପବଲିକାନ ଜାତୀୟ ସମ୍ମିଳନୀରେ ଲିଙ୍କନଙ୍କୁ ସଭାପତି ପଦପାଇଁ ମନୋନୀତ କରାଯାଇଥିଲା । ଧୀର ଭାବରେ ସେ ଏହି ମନୋନୟନକୁ ସ୍ୱୀକାର କରିନେଲେ ।

ସ୍ପ୍ରିଂଫିଲ୍ଡ, ଇଲିନୟ,
ମେ ୨୩, ୧୮୬୦

ରିପାବ୍ଲିକାନ ଜାତୀୟ ସମ୍ମିଳନୀର ସଭାପତି
ସମ୍ମାନାର୍ଘ୍ୟ ଜର୍ଜ ଅ୍ୟାସମାନ
ମହାଶୟ :

ଆପଣଙ୍କ ସଭାପତିତ୍ୱରେ ଅନୁଷ୍ଠିତ ସମ୍ମିଳନୀରେ ମୋତେ ଯେଉଁ ମନୋନୟନ ଦାନ କରିଛନ୍ତି ମୁଁ ତାହା ସ୍ୱୀକାର କରି ନେଇଅଛି । ଏ ବିଷୟ ସମ୍ପର୍କରେ ସମ୍ମିଳନୀର ସଂଶ୍ଳିଷ୍ଟ କମିଟି ତରଫରୁ ଆପଣଙ୍କର ଓ ଅନ୍ୟାନ୍ୟମାନଙ୍କର ପତ୍ରରେ ଯଥାରୀତି ଅବଗତ ହୋଇଅଛି ।

ଆପଣଙ୍କର ପତ୍ର ସହିତ ନୀତି ଓ ମନୋଭାବର ଯେଉଁ ଘୋଷଣାବାଣୀଟି ରହିଅଛି ମୁଁ ତାକୁ ଅନୁମୋଦନ କରିଅଛି ; ଯାହାଦ୍ୱାରା ଏହାର କୌଣସି ଅଂଶ ଲଙ୍ଘିତ ନ ହୁଏ ବା ଅମାନ୍ୟ ନ କରା ହୁଏ ସେ ଦିଗରେ ମୋର ଦୃଷ୍ଟି ରହିବ । ଐଶ୍ୱରିକ ସାହାଯ୍ୟ ପାଇଁ ଆବେଦନ ଜଣାଇ, ଏବଂ ସମ୍ମିଳନୀରେ ଯେଉଁମାନଙ୍କର ପ୍ରତିନିଧିବୃନ୍ଦ ଥିଲେ ସେମାନଙ୍କର ମତାମତ ଏବଂ ମନୋଭାବର ପ୍ରତି, ଜାତିର ସକଳ ଜନସାଧାରଣଙ୍କ ପ୍ରତି, ସକଳ ରାଷ୍ଟ୍ର ଏବଂ ସ୍ଥାନର ଅଧିକାର ପ୍ରତି, ସମ୍ବିଧାନର ପବିତ୍ରତା, ସକଳର ଚିରମିଳନ, ଐକ୍ୟ ଏବଂ ସମୃଦ୍ଧି ପ୍ରତି, ଯଥାଯଥ ଶ୍ରଦ୍ଧା ପ୍ରଦର୍ଶନ କରି ସମ୍ମିଳନୀର ଘୋଷିତ ନୀତି ସମୂହର କାର୍ଯ୍ୟକାରୀ ସାଫଲ୍ୟ ପାଇଁ ମୁଁ ସାନନ୍ଦେ ସହଯୋଗିତା କରିବି ।

ଆପଣଙ୍କର କୃତଜ୍ଞ ବନ୍ଧୁ ଓ
ସହ-ନାଗରିକ
ଏ, ଲିଙ୍କନ

## ବିଦାୟକାଳୀନ ଭାଷଣ : ସ୍ପ୍ରିଂଫିଲ୍ଡ

୧୮୬୧ ମସିହା ଫେବୃୟାରୀ ମାସରେ ଲିଙ୍କନ ଇଲିନୟେସ ଅନ୍ତର୍ଗତ ସ୍ପ୍ରିଂଫିଲ୍ଡଠାରେ ତାଙ୍କର ଗୃହତ୍ୟାଗ କରି ସଭାପତି କାର୍ଯ୍ୟଭାର ଗ୍ରହଣକରିବା ପାଇଁ ୱାସିଂଟନ ଆସିଲେ । ପରବର୍ତ୍ତୀ ଘଟଣାବଳୀର ଗୃହଯୁଦ୍ଧ ଏବଂ ହତ୍ୟା ସଂବନ୍ଧରେ ତାଙ୍କର ସଂକ୍ଷିପ୍ତ ବିଦାୟକାଳୀନ ଭାଷଣଟିର ତୀବ୍ରତା ଆହୁରି ବୃଦ୍ଧି ପାଇଲା ।

ବନ୍ଧୁଗଣ :

ମୋର ଅବସ୍ଥାର ସମ୍ମୁଖୀନ ନହୋଇ ଏପରି କୌଣସି ଲୋକ ଏହି ବିଦାୟରେ ମୋର ଦୁଃଖ ଉପଲବ୍ଧି କରି ପାରିବ ନାହିଁ । ଏହି ସ୍ଥାନ ଏବଂ ଏହି ସ୍ଥାନର ସହୃଦୟ ଜନଗଣଙ୍କ ନିକଟରେ ମୁଁ ସବୁକିଛି ପାଇଁ ଋଣୀ । ଏହି ସ୍ଥାନରେ ମୁଁ ଗୋଟିଏ ଶତାବ୍ଦୀର ଏକ ଚତୁର୍ଥାଂଶ କଟାଇଅଛି—ଥିଲି ଯୁବକ, ହୋଇଛି ପ୍ରୌଢ଼, ଏହିଠାରେ ହିଁ ମୋର ସନ୍ତାନମାନଙ୍କର ଜନ୍ମ ଏବଂ ଜଣେ ମଧ୍ୟ ଏହିଠାରେ ସମାଧିସ୍ଥ । ୱାସିଂଟନଙ୍କ ଅପେକ୍ଷା ଗୁରୁତର କର୍ତ୍ତବ୍ୟର ଭାର ନେଇ ମୁଁ ଯାଉଛି—ଜାଣେନାହିଁ କେବେ ଫେରିବି କି ଆଦୌ ଫେରିବି ନାହିଁ। ଯେଉଁ ପରମେଶ୍ବରଙ୍କର କୃପା ତାହା ଉପରେ ବର୍ଷିତ ହୋଇଥିଲା ତାଙ୍କର ସହାୟତା ବ୍ୟତୀତ ମୁଁ ସଫଳତା ହାସଲ କରି ପାରିବି ନାହିଁ । ସେହି ସହାୟତା ଲାଭକଲେ ମୁଁ କୌଣସି କାର୍ଯ୍ୟରେ ଅକୃତକାର୍ଯ୍ୟ ହେବିନାହିଁ । ଭଗବାନଙ୍କ ଉପରେ ବିଶ୍ୱାସ ରଖି ଯେ ମୋ ସହିତ ଯାଇ ପାରିବ ଏବଂ ସଙ୍ଗେ ସଙ୍ଗେ ଆପଣଙ୍କ ସହିତ ରହି ପାରିବ ଏବଂ କଲ୍ୟାଣ କରିଓ ଯେ ସର୍ବତ୍ର ବିରାଜମାନ, ତାହା ଉପରେ ବିଶ୍ୱାସ ରଖି ପାରିଲେ ଆମ୍ଭେମାନେ ଆଶାକରୁ ଅବଶେଷରେ ସମସ୍ତଙ୍କର ଭଲହେବ । ମୁଁ ଆପଣମାନଙ୍କୁ ତାଙ୍କର ତତ୍ତ୍ୱାବଧାନରେ ରଖି ଯାଉଅଛି, ଏବଂ ମୁଁ ଆଶାକରେ ଆପଣମାନେ ପ୍ରାର୍ଥନା କରିବେ ଯେଉଁଥିରେ ମୁଁ ମଧ୍ୟ ତାଙ୍କର ତତ୍ତ୍ୱାବଧାନରେ ରହିବି—ମୁଁ ଆପଣମାନଙ୍କ ନିକଟରୁ ସହାସ୍ୟରେ ବିଦାୟ ପ୍ରାର୍ଥନା କରୁଅଛି ।

## ସ୍ୱାଧୀନତା ଭବନରେ ଭାଷଣ

ଲିଙ୍କନଙ୍କର ନିର୍ବାଚନରେ କ୍ରୁଦ୍ଧ ଏବଂ ଭୀତ ହୋଇ ଦାସ ରାଷ୍ଟ୍ରଗୁଡିକ, ଲିଙ୍କନ ସ୍ପ୍ରିଂଫିଲ୍ଡ ଛାଡ଼ିଯିବା ପୂର୍ବରୁ ଇଉନିୟନଠାରୁ ସ୍ୱାତନ୍ତ୍ର୍ୟ ଘୋଷଣା କରିବାକୁ ଆରମ୍ଭ କରିଥିଲେ । ୱାସିଂଟନ ଯିବା ପଥରେ ଫିଲାଡେଲଫିଆର ସ୍ୱାଧୀନତା ଭବନରେ—ଯେଉଁଠାରେ ବହୁବର୍ଷ ପୂର୍ବେ ସ୍ୱାଧୀନତାର ଘୋଷଣାପତ୍ର ସ୍ୱାକ୍ଷରିତ ହୋଇଥିଲା ସେଠାରେ—ଏକ ସଂକ୍ଷିପ୍ତ ବକ୍ତୃତାରେ ସେ ଏହି ଉଦ୍‌ବେଗ ଜନକ ପରିସ୍ଥିତି ସମ୍ପର୍କରେ ତାଙ୍କର ମନୋଭାବ ବ୍ୟକ୍ତ କଲେ ।

ଏହି ସ୍ଥାନରେ—ଯେଉଁଠାରେ ପ୍ରାଜ୍ଞ, ଦେଶପ୍ରେମ, ନୀତି—ନିଷ୍ଠାପରତାର ସମନ୍ୱୟ ଘଟିଥିଲା, ଯେଉଁସବୁ ଆଦର୍ଶର ନିୟମର ଆଶ୍ରୟରେ ଆମ୍ଭେମାନେ ବାସ କରୁ ତାହାର ସୃଷ୍ଟି ହୋଇଥିଲା । ଏହି ସ୍ଥାନରେ ଦଣ୍ଡାୟମାନ ହୋଇ ମୋର ହୃଦୟ ଗଭୀର ଆବେଗରେ ପୂର୍ଣ୍ଣ ହୋଇଅଛି । ଆପଣମାନେ ଅନୁଗ୍ରହ କରି କହିଛନ୍ତି ଯେ ଦେଶର ବର୍ତ୍ତମାନ ଅନିଶ୍ଚିତ ଅବସ୍ଥାରେ ଶାନ୍ତିର ପୁନଃ ପ୍ରତିଷ୍ଠାର କ୍ଷମତା ମୋ ହାତରେ ରହିଅଛି । ପ୍ରତ୍ୟୁତ୍ତରରେ ମୁଁ କହିପାରେ ଯେ ମୋର ରାଜନୈତିକ ମତ ସମ୍ପୂର୍ଣ୍ଣଭାବେ, ମୋର କ୍ଷମତାନୁଯାୟୀ ଏହି ଭବନରୁ ଯେଉଁ ସମସ୍ତ ମନୋଭାବ ଉଦ୍ଭୂତ ହୋଇ ପୃଥିବୀ ତମାମ ବିସ୍ତାର ହୋଇଅଛି ତାହା ମଧ୍ୟରୁ ଗ୍ରହଣ କରିଅଛି । ମୋର ଏପରି କୌଣସି ରାଜନୈତିକ ଅନୁଭୂତି ନାହିଁ, ଯାହା ରାଜନୈତିକ ଘୋଷଣାବାଣୀରୁ ଆହୃତ ନୁହଏ । ଯେଉଁମାନେ ଏହିଠାରେ ସମବେତ ହୋଇ ସ୍ୱାଧୀନତାର ସେହି ଘୋଷଣାବାଣୀ ରଚନା ଏବଂ ଗ୍ରହଣ କରି ଯେଉଁ ବିପଦର ସମ୍ମୁଖୀନ ହୋଇଥିଲେ, ମୁଁ ପ୍ରାୟତଃ ତାହାର ଅନୁଧାବନ କରେ । ଯେଉଁ ସୈନ୍ୟବାହିନୀ ଏବଂ ସେନାପତିମଣ୍ଡଳୀ ସେହି ସ୍ୱାଧୀନତା ଅର୍ଜ୍ଜନ କରି ସେମାନେ ଯେଉଁ କଷ୍ଟ ସହ୍ୟ କରିଥିଲେ, ବାରମ୍ବାର ମୁଁ ସେ ସମ୍ପର୍କରେ ଅନୁଧ୍ୟାନ କରେ । ବାରମ୍ବାର ମୁଁ ନିଜକୁ ପ୍ରଶ୍ନକରେ କୌଣସି ମହାନ୍ ନୀତି ବା ସାଧାରଣ ବଳରେ ଏହି କନଫେଡାରେସି (Confederacy) ଏତେଦିନ ପର୍ଯ୍ୟନ୍ତ ଐକ୍ୟବଦ୍ଧ ଥିଲା ? କେବଳ ମାତୃଭୂମି ଠାରୁ ଉପନିବେଶଗୁଡ଼ିକୁ ବିଚ୍ଛିନ୍ନ କରିବା ଏହାର ମୂଳ ଉଦ୍ଦେଶ୍ୟ ନଥିଲା ; ଏହାର ଉଦ୍ଦେଶ୍ୟ ଥିଲା ସ୍ୱାଧୀନତାର ଘୋଷଣା ପତ୍ରରେ ଯେପରି ସବୁକାଳ ପାଇଁ କେବଳମାତ୍ର ଏହି ଦେଶର ଜନଗଣଙ୍କୁ ସ୍ୱାଧୀନତା ଦାନ କରା ହୋଇନାହିଁ, ମୋର ମନେହୁଏ ଦାନ କରାହୋଇଅଛି ସମଗ୍ର ବିଶ୍ୱବାସୀଙ୍କୁ । ଏହାର ମୂଳ ଉଦ୍ଦେଶ୍ୟ ଥିଲା ସେହି ଆଶ୍ୱାସ ବଳରେ ଠିକ୍ ସମୟରେ ସକଳ ମନୁଷ୍ୟର ସ୍କନ୍ଧରୁ ବୋଝ ଉତାରିନେବ । ଏହି ଅନୁଭୂତିହିଁ ସ୍ୱାଧୀନତାର ଘୋଷଣାବାଣୀରେ ନିହିତ ରହିଅଛି । ଏହିକ୍ଷଣି, ବନ୍ଧୁଗଣ, ଏହି ଭିତ୍ତିରେ କି ଦେଶକୁ ବଞ୍ଚା ଯାଇ ପାରିବ ? ଯଦି ବଞ୍ଚାଯାଏ, ତେବେ ମୁଁ ଏଥିରେ ସାହାଯ୍ୟ କରି ପାରିଲେ ନିଜକୁ ପୃଥିବୀରେ ସର୍ବଶ୍ରେଷ୍ଠ ସୁଖୀଲୋକ ବୋଲି ମନେ କରିବି । ଏହି ନୀତିର ଭିତ୍ତିରେ ଯଦି ଏହା ବଞ୍ଚା ନହୁଏ, ତେବେ ତାହା ନିତ୍ୟାନ୍ତ ପରିତାପର ବିଷୟ ହେବ । କିନ୍ତୁ ଏହି ନୀତି ଯଦି ପରିତ୍ୟାଗ ନ କରି ଦେଶକୁ ରକ୍ଷା କରିବା ସମ୍ଭବ ନହୁଏ, ତେବେ ମୋର ମତରେ ଏହି ନୀତିକୁ ବିସର୍ଜ୍ଜନ ଦେବା ଅପେକ୍ଷା ଏହି ସ୍ଥାନରେ ନିହତ ହେବା ଶ୍ରେୟସ୍କର ।

ଏହିକ୍ଷଣି ମୋ ମତରେ ବର୍ତ୍ତମାନ ପରିସ୍ଥିତିରେ ଯୁଦ୍ଧ ବା ରକ୍ତପାତର କୌଣସି ସୁଯୋଗ ନାହିଁ । ଏହାର ମଧ୍ୟ କୌଣସି ପ୍ରୟୋଜନ ନାହିଁ । ମୁଁ ଏହି ପନ୍ଥାର ସମର୍ଥକ ନୁହେଁ ଏବଂ ଆଗରୁ ମୁଁ କହିବାକୁ ଚାହେଁ ଯେ ସରକାରଙ୍କୁ ବାଧ୍ୟ ନକଲେ କୌଣସି ରକ୍ତପାତ ହେବନାହିଁ—ଗତ୍ୟନ୍ତର ନ ରହିଲେ ଆତ୍ମରକ୍ଷା ପାଇଁ ସରକାରଙ୍କୁ ବ୍ୟବସ୍ଥା ଅବଲମ୍ବନ କରିବାକୁ ହେବ ।

ବନ୍ଧୁଗଣ, ଏହି ବକ୍ତୃତାଟି ସମ୍ପୂର୍ଣ୍ଣରୂପେ ଅପ୍ରତ୍ୟାଶିତ ଏବଂ ମୁଁ ଯେତେବେଳେ ଏଠାକୁ ଆସିଲି ତେତେବେଳେ ମୋତେ କିଛି କହିବାକୁ ପଡ଼ିବ ବୋଲି ଭାବି ନଥିଲି । ମୁଁ ଭାବିଥିଲି ପତାକା ଉତ୍ତୋଳନ ସଂକ୍ରାନ୍ତରେ କୌଣସି ଅନୁଷ୍ଠାନ ପାଇଁ ମୋତେ ଡାକିଛନ୍ତି । ମୁଁ ହୁଏତ କିଛି ଅନୁଚିତ ଭାବେ କହି ପାରିଥାଏ, ମୁଁ ଯାହା କହିଅଛି ଏହା ମୋର ଜୀବନର ମୂଳମନ୍ତ୍ର ଏବଂ ସର୍ବଶକ୍ତିମାନର ଯଦି ସେପରି ଅଭିପ୍ରାୟ ହୁଏ ତାହାହେଲେ ଜୀବନପାତ କରିବି ।

## ପ୍ରଥମ ଆନୁଷ୍ଠାନିକ ଭାଷଣ

୧୮୬୧ ମସିହା ମାର୍ଚ୍ଚ ମାସ ୪ ତାରିଖର ପ୍ରାରମ୍ଭିକ ଭାଷଣରେ ଲିଙ୍କନ ଦାକ୍ଷିଣାତ୍ୟ ରାଜ୍ୟସମୂହକୁ ରାଷ୍ଟ୍ରପୁଞ୍ଜରେ ଧୈର୍ଯ୍ୟର ସହିତ ରହିବାକୁ ପ୍ରବର୍ତ୍ତାଇଥିଲେ ଏବଂ ଅନ୍ତର୍ଯୁଦ୍ଧରୁ ବିରତ ହେବାକୁ ସେମାନଙ୍କୁ ଅନୁରୋଧ କରିଥିଲେ ।

ପ୍ରଧାନ ମାଜିଷ୍ଟ୍ରେଟ ତାଙ୍କର ସମସ୍ତ କ୍ଷମତା ଜନସାଧାରଣଙ୍କ ଠାରୁ ପାଇଥାନ୍ତି ଏବଂ ଦେଶ ବିଭକ୍ତିର ବିବାଦ ମେଣ୍ଟାଇବା ପାଇଁ କୌଣସି ପ୍ରକାର କ୍ଷମତା ଜନସାଧାରଣ ତାଙ୍କୁ ହସ୍ତାନ୍ତର କରି ନଥାନ୍ତି । ଯଦି ଜନସାଧାରଣ ତାହା ଉଚିତ ମନେ କରନ୍ତି, ତାହାହେଲେ ସେମାନେ ତାହା କରି ପାରନ୍ତି ; କିନ୍ତୁ ଶାସନକର୍ତ୍ତା ଭାବରେ ସେମାନଙ୍କର ଏ ପରିସ୍ଥିତିରେ କିଛି କରିବାର କ୍ଷମତା ନାହିଁ ।

ଯେ ହେତୁ ଶାସନ କ୍ଷମତା ତାଙ୍କ ହସ୍ତରେ ହସ୍ତାନ୍ତର କରା ଯାଇଅଛି ଏବଂ ଯେତେ ସମୟ ପର୍ଯ୍ୟନ୍ତ ଶାସନ ଭାର ତାଙ୍କ ହସ୍ତରେ ନ୍ୟସ୍ତ ଅଛି, ତେତେ ସମୟ ପର୍ଯ୍ୟନ୍ତ ତାହା ସୁଚାରୁରୂପେ ନିର୍ବାହ କରି ପରବର୍ତ୍ତୀ ଶାସକଙ୍କୁ କ୍ଷମତା ହସ୍ତାନ୍ତର କରିବା ତାଙ୍କର ପ୍ରଧାନ କର୍ତ୍ତବ୍ୟ ଅଟେ ।

ତାହାହେଲେ ଜନଗଣର ସର୍ବଶେଷ ନିଷ୍ପତ୍ତି ଉପରେ ବିଶ୍ୱାସ ନ ରହିବ କାହିଁକି ? ଆମର ବର୍ତ୍ତମାନ ବିବାଦ ସ୍ଥଳରେ ଉଭୟ ପକ୍ଷଙ୍କ ବିଶ୍ୱାସ ବ୍ୟତୀତ ପ୍ରକୃତ ସମାଧାନର ପଥ ପାଇ ପାରିବୁ କି ? ଯଦି ଜାତିର ସର୍ବଶ୍ରେଷ୍ଠ ଶାସକ ତାଙ୍କର ସତ୍ୟ ଓ ନ୍ୟାୟ ବଳୟରେ ତୁମରି ଉତ୍ତର ପାର୍ଶ୍ୱ କିମ୍ବା ତୁମରି ଦକ୍ଷିଣ ପାର୍ଶ୍ୱରେ ଅବସ୍ଥାନ କରି ପାରନ୍ତି ; ସେହି ସତ୍ୟ, ସେହି ନ୍ୟାୟ ସବୁବେଳେ ମାର୍କିଣ ଯୁକ୍ତରାଷ୍ଟ୍ରର ପ୍ରଧାନ ବିଚାରାଳୟ ଜନମତ ଦ୍ୱାରା କାର୍ଯ୍ୟକାରୀ ହେବ ।

ଆମ୍ଭେମାନେ ଯେଉଁ ସରକାରଙ୍କ ଅଧୀନରେ ଶାସିତ ହେଉ, ଜନସାଧାରଣ ବିଚାରପୂର୍ବକ ତାଙ୍କର କର୍ମଚାରୀମାନଙ୍କୁ ଶାସନକ୍ଷମତା ହସ୍ତାନ୍ତର କରିଥାନ୍ତି କିନ୍ତୁ ଯଦି ବିନଷ୍ଟ ପାଇଁ ଖୁବ୍ କମ୍ କ୍ଷମତା ହସ୍ତାନ୍ତର କରିଥାନ୍ତି, ତଥାପି ତାକୁ କମ ସମୟ ମଧ୍ୟରେ ଫେରାଇ ଆଣନ୍ତି ।

ଯେତେବେଳେ ଜନଗଣ ନିଜର ନୈତିକତା ସମ୍ବନ୍ଧରେ ଜାଗ୍ରତ, ତେତେବେଳେ ଶାସକ ଦଳ ଯେ କୌଣସି ପ୍ରକାର ଅହିତକର ଶାସନର ଚରମସୀମା ଅତିକ୍ରମ କଲେ ସୁଦ୍ଧା ସାମାନ୍ୟ ୪ବର୍ଷ ପାଇଁ ରାଷ୍ଟ୍ରର କୌଣସି ଅନିଷ୍ଟ ସାଧନ କରି ପାରିବେ ନାହିଁ ।

ମୋର ଦେଶବାସୀଗଣ, ପ୍ରତ୍ୟେକ ସ୍ୱାଧୀନଭାବରେ ଓ ମିଳିତ ଭାବରେ ଏହି ବିଷୟରେ ସ୍ଥିର ହୃଦୟରେ ଉତ୍ତମରୂପେ ଚିନ୍ତା କରନ୍ତୁ । କୌଣସି ମୂଲ୍ୟବାନ ବିଷୟ ସମୟ ନେବା ଫଳରେ ନଷ୍ଟ ହେବ ନାହିଁ । ଯଦି ତୁମ୍ଭମାନଙ୍କ ମଧ୍ୟରୁ କାହାରି ଉଦ୍ଦେଶ୍ୟ ଥାଏ ଯେ କୌଣସି ବିଷୟରେ ତର୍କ ବିତର୍କ ନକରି ଖୁବ୍ ଶୀଘ୍ର ଆମର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବା ତାହାହେଲେ ସେହି ଲକ୍ଷ୍ୟ କେବଳମାତ୍ର ସମୟ ନଷ୍ଟକରି ବିଫଳ ହୋଇଥାଏ; କିନ୍ତୁ କୌଣସି ଭଲ ଲକ୍ଷ୍ୟ ଏହାଦ୍ୱାରା ବିଫଳ ହେବନାହିଁ । ପୁରାତନ ସମ୍ବିଧାନ ଏ ପର୍ଯ୍ୟନ୍ତ ଅକ୍ଷତ ଅବସ୍ଥାରେ ଅଛି କିନ୍ତୁ ନୂତନ ଶାସନର କୌଣସି କ୍ଷମତା ନାହିଁ ଯେ ତାକୁ ପରିବର୍ତ୍ତନ କରି ପାରିବ । ଏବଂ ତୁମ୍ଭମାନଙ୍କ ମଧ୍ୟରୁ ଯେଉଁମାନେ ଅସନ୍ତୁଷ୍ଟ ସେମାନେ ଉଭୟକୁ ପରିବର୍ତ୍ତନ କରି

ପାରନ୍ତି । ଯଦି ଏହା ସ୍ୱୀକୃତ ହୁଏ ତାହାହେଲେ ଯେଉଁମାନେ ଅସନ୍ତୁଷ୍ଟ ସେମାନେ ଉପଯୁକ୍ତ ପଥର ଆଶ୍ରୟ ନେଇ ପାରନ୍ତି; ଏବଂ ଏ କ୍ଷେତ୍ରରେ ଉତ୍ତେଜିତ ହେବାର କୌଣସି କାରଣ ନାହିଁ । ଜ୍ଞାନ, ସ୍ୱଦେଶାନୁରାଗ, ଖ୍ରୀଷ୍ଟଧର୍ମ ଏବଂ ଈଶ୍ୱରଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ରଖି ଯେଉଁମାନେ ଏପର୍ଯ୍ୟନ୍ତ ଏହି ପବିତ୍ର ଭୂମି ତ୍ୟାଗ କରି ନାହାଁନ୍ତି ତଥାପି ସେମାନେ ବର୍ତ୍ତମାନ ଅସୁବିଧାକୁ ଦୂରକରି ଉପଯୁକ୍ତ ଉପାୟରେ ସମାଧାନ କରି ପାରିବେ ।

ମୋର ଅସନ୍ତୁଷ୍ଟ ଦେଶବାସୀଗଣ ତୁମର ହସ୍ତରେ, ଅନ୍ତର୍ଯୁଦ୍ଧର ବିଗ୍ରହ ବିଷୟ ନ୍ୟସ୍ତ, ମୋ ହସ୍ତରେ ନୁହେଁ । ସରକାର ତୁମକୁ ଆକ୍ରମଣ କରି ପାରିବ ନାହିଁ । ତୁମେ ନିଜେ ନିଜେ ଆକ୍ରମଣକାରୀ ହେବା ବ୍ୟତୀତ ଅନ୍ୟକିଛି ବିରୋଧ ନାହିଁ ।

ତୁମର ଈଶ୍ୱରଙ୍କଠାରେ କୌଣସି ନ୍ୟସ୍ତ ଚୁକ୍ତି ନାହିଁ ଯେ ତୁମେ ସରକାର ଧ୍ୱଂସ କରି ପାରିବ, କିନ୍ତୁ ମୁ ଏହାକୁ ସମସ୍ତ ବିପଦରୁ ଉଦ୍ଧାର କରିବା ପାଇଁ ସେହି ଦୟାମୟ ଈଶ୍ୱରଙ୍କଠାରେ ମୋର ଏକମାତ୍ର ପ୍ରାର୍ଥନା ।

ମୁଁ ବନ୍ଦ କରିବାକୁ ଅନିଚ୍ଛୁକ । ଆମ୍ଭେମାନେ ଶତ୍ରୁ ନହୁଁ, କିନ୍ତୁ ବନ୍ଧୁ । ଆମ୍ଭେମାନେ ଶତ୍ରୁ ହେବା ଉଚିତ ନୁହେଁ । ଯଦିଓ କ୍ରୋଧର ତୀବ୍ର ଆକର୍ଷଣୀଶକ୍ତି ଅଛି ତଥାପି ଏହା ସ୍ନେହର ବନ୍ଧନକୁ ଛିଡାଇ ପାରିବ ନାହିଁ । ସ୍ମୃତିର ଲୁକ୍କାୟିତ ତନ୍ତ୍ରୀ ଅତୀତକୁ ସ୍ପର୍ଶକରି ଏହି ଜନ୍ମଭୂମି, ଯୁଦ୍ଧଭୂମି ତଥା ଦେଶ-ହିତୈଷୀର ସ୍ମୃତିସ୍ତମ୍ଭ ଠାରୁ ଆରମ୍ଭ କରି ପ୍ରତ୍ୟେକ ଜୀବନ୍ତ ବସ୍ତୁ ତଥା ପ୍ରସ୍ତର ନିର୍ମିତ ଚୁଲ୍ଲୀର ଯଶ ଏକ ସ୍ୱରରେ ଗାନ କରି ସ୍ୱର୍ଗୀୟ ଦୂତରୂପେ ପରିଚିତ ହେବ ।

## କଂଗ୍ରେସକୁ ଯୁଦ୍ଧକାଳୀନ ବାର୍ତ୍ତା

*୧୮୬୧ ମସିହା ଏପ୍ରିଲ ମାସରେ ବିଚ୍ଛିନ୍ନ ରାଜ୍ୟ ସମୂହର ସୈନ୍ୟଗଣ ଫୋର୍ଟ ସମଟର ଦୁର୍ଗରକ୍ଷକ ସୈନ୍ୟମାନଙ୍କ ଉପରେ ଗୋଳା ବର୍ଷଣ କଲେ ଏବଂ ଫଳରେ ଯୁଦ୍ଧ ହେବା ସୁନିଶ୍ଚିତ ହେଲା । ୧୮୬୧ ମସିହା ଜୁଲାଇ ୪ ତାରିଖରେ ଲିଙ୍କନ ତତ୍କାଳୀନ ଅବସ୍ଥାକୁ ଗମ୍ଭୀର ଭାବରେ ପର୍ଯ୍ୟବେକ୍ଷଣ କରି ଏକ ବାର୍ତ୍ତା କଂଗ୍ରେସକୁ ପଠାଇଲେ ।*

...ଫୋର୍ଟ ସମଟରର ଅବସ୍ଥାରେ...ସରକାରଙ୍କ ଆକ୍ରମଣକାରୀମାନେ...ଦେଶ ଉପରେ ଏକ ସ୍ୱତନ୍ତ୍ର, "ହଠାତ୍ ଧ୍ୱଂସ କିମ୍ବା ରକ୍ତପାତ" ପରିସ୍ଥିତିର ସମ୍ମୁଖୀନ କରାଇଛନ୍ତି ।

ଏହି ସମସ୍ୟାଟି ଯୁକ୍ତରାଷ୍ଟ୍ରର ପ୍ରଦେଶମାନଙ୍କର ମୃତ୍ୟୁ ସମସ୍ୟାଠାରୁ ବଳି ଏକ ସମସ୍ୟା । ଏହା ସମଗ୍ର ମାନବ ଜାତିକୁ ବିବେଚନା କରିବାକୁ ଦେଇଛି । ବୈଧାନିକ ପ୍ରଜାତନ୍ତ୍ର କିମ୍ବା ଗଣତନ୍ତ୍ର—ଜନଗଣ ଦ୍ୱାରା ସମର୍ଥିତ ଜନଗଣର ସରକାର, ତାହାର ନିଜ ଦେଶର ଶତ୍ରୁମାନଙ୍କ କବଳରୁ ନିଜ ଦେଶର ସାର୍ବଭୌମ କ୍ଷମତା ରକ୍ଷା କରି ପାରିବ କି ନାହିଁ । ଏଠାରେ ପ୍ରଶ୍ନ ଉଠେ, ହୁଏତ ଅସନ୍ତୁଷ୍ଟ ମୁଷ୍ଟିମେୟ ନାଗରିକ ଗଣ

ଇନ୍ଦ୍ରିୟନିୟମାନୁଯାୟୀ ଶାସନ ଭାର ପରିଚାଳନା କରିବେ, ଯେ କୌଣସି ସ୍ଥଳରେ ଛଳନାତ୍ମକ ଭାବ ନେଇଥିଲେ ଏଠାରେ ସର୍ବଦା ସେହିଭଳି ଛଳନାତ୍ମକ ଭାବ ନେଇ କିମ୍ବା ପରୀକ୍ଷାମୂଳକ ଭାବେ ଯେ କୌଣସି ଛଳନାତ୍ମକ ଭାବନା ନେଇ ସେମାନଙ୍କର ସରକାରଙ୍କୁ ଧ୍ୱଂସ କରିବେ, ଓ ଏହିଭଳି ଭାବରେ ପୃଥିବୀ ପୃଷ୍ଠରୁ ସ୍ୱାଧୀନ ସରକାରର ବିଲୁପ୍ତ ସାଧନ ହେବ। "ଏହି ପ୍ରକାର ସହଜାତ ଦୁର୍ବଳତା। ପ୍ରତ୍ୟେକ ଗଣତନ୍ତ୍ର ସରକାରରେ ପ୍ରଯୁଜ୍ୟ କି ?" ନିଶ୍ଚୟ ଗୋଟିଏ ସରକାର ଜନସାଧାରଣଙ୍କର ମୁକ୍ତି ପାଇଁ ଖୁବ୍ ସବଳ ହେବ ନା ନିଜର ନିରାପତ୍ତା ରକ୍ଷାପାଇଁ ଖୁବ୍ ଦୁର୍ବଳ ହେବା ଅତ୍ୟାବଶ୍ୟକ ?"

ତେଣୁ ଏହିପରିସ୍ଥିତିକୁ ଲକ୍ଷ୍ୟକରି ସରକାରଙ୍କ ସୈନ୍ୟବଳ ତାହାର ବିନାଶ ପାଇଁ ଯଥେଷ୍ଟ ବାଧା ଦେବ ଏବଂ ନିରାପତ୍ତା ରକ୍ଷା ପାଇଁ ଯଥେଷ୍ଟ କ୍ଷମତା ପ୍ରୟୋଗ କରିବା ବ୍ୟତୀତ ଅନ୍ୟକିଛି ଅଭିରୁଚି ନାହିଁ······

ଆମର ଲୋକପ୍ରିୟ ସରକାର ଅଳ୍ପ ସମୟ ପାଇଁ ଏକ ପରୀକ୍ଷାମୂଳକ ନୀତି ଅବଲମ୍ବନ କରିବାକୁ ଆହ୍ୱାନ କରିଛନ୍ତି। ଏହା ମଧ୍ୟରୁ ଦୁଇଟି ପ୍ରଶ୍ନର ଶେଷ ସିଦ୍ଧାନ୍ତରେ ଜନଗଣ ପହଞ୍ଚିଛନ୍ତି—ଗୋଟିଏ ହେଉଛି ସମୃଦ୍ଧିଶାଳୀ ସରକାର ଗଠନ କରିବା ଓ ଅନ୍ୟଟି ହେଉଛି ସେହି ସରକାରକୁ ଭଲଭାବରେ ନିୟନ୍ତ୍ରଣ କରିବା। ତଥାପି ଗୋଟିଏ ବାକି ରହେ—ଆଭ୍ୟନ୍ତରୀଣ ଉଦ୍ୟମରେ ଏହାକୁ ଧ୍ୱଂସ କରିବାକୁ ଚେଷ୍ଟା କରିବା ସମୟରେ ରକ୍ଷା କରିବା। ବର୍ତ୍ତମାନ ସେମାନେ ପୃଥିବୀ ଆଗରେ ପରିବେଷିତ କରି ଜଣାଇଦେବେ ଯେ ଯେଉଁମାନେ ଏକ ନିର୍ବାଚନ ସୁନ୍ଦର ଭାବରେ ପରିଚାଳନା କରି ପାରନ୍ତି ସେମାନେ ଏକ ରାଜଦ୍ରୋହ ଦମନ କରି ପାରନ୍ତି; ସେହି ଭୋଟପତ୍ର ଗୁଡ଼ିକ ଗୋଳା ବାରୁଦର ପ୍ରକୃତ ଶାନ୍ତିଜନକ ପରବର୍ତ୍ତୀ ଉତ୍ତରାଧିକାରୀ; ଏବଂ ଯେତେବେଳେ ସେହି ଭୋଟପତ୍ର ଗୁଡ଼ିକ ନ୍ୟାୟସଙ୍ଗତ ସମ୍ବିଧାନାନୁଯାୟୀ ନିର୍ବାଚିତ କରିଅଛି ସେଠାରେ ଗୋଳା ବାରୁଦକୁ ଫେରି ଯିବାର ପୁନର୍ବିଚାର ନାହିଁ; ପରବର୍ତ୍ତୀ ନିର୍ବାଚନରେ ସେହି ଭୋଟପତ୍ର ବ୍ୟତୀତ କାହାରିକୁ ଅନୁରୋଧ କରାଯାଇ ନପାରେ। ଏହା ଶାନ୍ତି ସ୍ଥାପନର ଏକ ବିରାଟ ଶିକ୍ଷା; ଲୋକମାନଙ୍କୁ ଶିକ୍ଷା ଦେବା ଉଚିତ ଯେ ସେମାନେ ନିର୍ବାଚନରେ ଯାହା କରି ପାରିନାହାଁନ୍ତି ତାହା ଯୁଦ୍ଧରେ କଦାପି ସମ୍ଭବ ନୁହେଁ। ନିର୍ବୋଧ ଯୁଦ୍ଧପ୍ରିୟ ଆରମ୍ଭକାରୀମାନଙ୍କୁ ଏହି ଶିକ୍ଷା ଦିଅ।

## ପ୍ରାର୍ଥନା ପାଇଁ ଘୋଷଣା ପତ୍ର

ଯେହେତୁ ଗୋଟିଏ ଅନ୍ତର୍ଯୁଦ୍ଧର ମର୍ମଚ୍ଛେଦ ହୃଦୟ ବିଦାରକ ଘଟଣା ସେମାନେ ନିଜେ ନିଜେ ଅନୁଭବ କଲେ, ଲିଙ୍କନ ଗୋଟିଏ ଦିନ ଗଣଅନଶନ ଓ ପ୍ରାର୍ଥନା ପାଇଁ ଦେଶବାସୀଙ୍କୁ ଆହ୍ୱାନ କରିଥିଲେ।

ମାର୍କିଣ ଯୁକ୍ତରାଷ୍ଟ୍ରର ସଭାପତିଙ୍କ ଦ୍ୱାରା :

ଘୋଷଣପତ୍ର

କଂଗ୍ରେସର ଉଭୟ ପରିଷଦ ଏକ ମିଳିତ ବିବୃତିରେ ମାର୍କିଣ ଯୁକ୍ତରାଷ୍ଟ୍ରର ସଭାପତିଙ୍କୁ "ଗୋଟିଏ ଦିନ ଗଣସୈନ୍ୟଜନ୍ୟତା, ପ୍ରାର୍ଥନା ଓ ଅନଶନ, ମାର୍କିଣ ଯୁକ୍ତରାଷ୍ଟ୍ରର ଜନସାଧାରଣଙ୍କ ଦ୍ୱାରା ପାଳନ କରିବାକୁ

ଅନୁରୋଧ କଲେ ଏବଂ ଧର୍ମନିଷ୍ଠ ଭାବରେ ସର୍ବଶକ୍ତିମାନ ଈଶ୍ୱରଙ୍କ ନିକଟରେ ନୈବେଦ୍ୟ ଅର୍ପଣ କରି ଦେଶର ନିରାପତ୍ତା ଓ ସାର୍ବଜନୀନ ଉନ୍ନତି ତଥା ଶାନ୍ତିପୂର୍ଣ୍ଣ ବାୟୁମଣ୍ଡଳ ପାଇଁ ପ୍ରାର୍ଥନା କରିବାକୁ ସଭାପତିଙ୍କ ଅନୁମତି ଚାହିଁଥିଲେ।" ଏବଂ ଯେହେତୁ ସବୁ ସମୟରେ ସତ୍ୟ ଯେ ଈଶ୍ୱରଙ୍କର ସର୍ବୋଚ୍ଚ ଶାସନ-କର୍ତ୍ତାଙ୍କୁ ସ୍ୱୀକାର ଓ ସମ୍ମାନ କରି, ତାଙ୍କର ଦଣ୍ଡବିଧାନକୁ ମୁଣ୍ଡ ପାତି ସହିନେଇ, ଶାସନକର୍ତ୍ତାଙ୍କ ଠାରେ ଭୟ ରଖି ପାପ ଓ ଅପରାଧକୁ ମାନିନେଲେ ଜ୍ଞାନର ଅଭ୍ୟୁଦୟ ହୁଏ ଏବଂ ବ୍ୟାକୁଳତା ଓ ଅନୁତାପର ସହିତ ଅତୀତର ଅପରାଧ ପାଇଁ କ୍ଷମାପ୍ରାର୍ଥନା ଚାହିଁ ବର୍ତ୍ତମାନ ଓ ଭବିଷ୍ୟତର କାର୍ଯ୍ୟକ୍ରମ ପାଇଁ ଅନୁଗ୍ରହ-ପ୍ରାର୍ଥୀ ହେବା ଉଚିତ।

ଏବଂ ଯେହେତୁ ଆମ୍ଭ ନିଜର ପ୍ରିୟ ଜନ୍ମଭୂମି ଈଶ୍ୱରଙ୍କ ଆଶୀର୍ବାଦ ଫଳରେ ଏକନିତ, ଉନ୍ନତ ଏବଂ ସୁଖଦାୟକ ସ୍ଥାନଥିଲା ବର୍ତ୍ତମାନ ତାହା ବିଭେଦ ଓ ଅନ୍ତର୍ଯୁଦ୍ଧରେ ଲିପ୍ତ। ଏହି କ୍ଲେଶଦାୟକ ପରିସ୍ଥିତିରେ ଅସାଧାରଣଭାବେ ଈଶ୍ୱରଙ୍କର କର୍ତ୍ତୃତ୍ୱକୁ ମାନି ଏବଂ ଦୁଃଖଦାୟକ ପରିସ୍ଥିତିରେ ଆମ ପ୍ରତ୍ୟେକଙ୍କର ବ୍ୟକ୍ତିଗତ ଓ ଜାତିଗତ ଅପରାଧକୁ ସ୍ମରଣ କରି ତାଙ୍କର ଦୟାର ପ୍ରାର୍ଥୀ ହେଲେ ଯଦିଓ ଆମ୍ଭମାନଙ୍କ ପକ୍ଷରେ ଆଉ ଅଧିକ ଦଣ୍ଡ ପ୍ରଯୁଜ୍ୟ, ତଥାପି ଆମ୍ଭମାନଙ୍କୁ ସେହି ଦଣ୍ଡରୁ ମୁକ୍ତି ଦେଇ ପାରନ୍ତି, ଯୁଦ୍ଧାସ୍ତ୍ର ଗୁଡ଼ିକୁ ଆଶୀର୍ବାଦ ଦାନ କରିବା ଫଳରେ ସେ ଗୁଡ଼ିକ ଦେଶ ତମାମ ଆଇନ, ଶାନ୍ତିଶୃଙ୍ଖଳା ସ୍ଥାପନ କରିବାରେ ବିନିଯୋଗ ହୋଇପାରେ ଏବଂ ତାଙ୍କର ତତ୍ତ୍ୱାବଧାନରେ ଆମ୍ଭମାନଙ୍କ ପୂର୍ବପୁରୁଷମାନଙ୍କର ଶ୍ରମ ଓ କଷ୍ଟ ସ୍ୱୀକାର ଫଳରେ ଅର୍ଜିତ ବ୍ୟକ୍ତି ଓ ଧର୍ମସ୍ୱାଧୀନତା ତାହାର ପୂର୍ବାବସ୍ଥାକୁ ଫେରି ଆସିପାରେ।

ତେଣୁ ମୁଁ ଆବ୍ରାହମ ଲିଙ୍କନ ମାର୍କିଣ ଯୁକ୍ତରାଷ୍ଟ୍ରର ସଭାପତି ହିସାବରେ ସେପ୍ଟେମ୍ବର ମାସ ଆସନ୍ତା ଗୁରୁବାର ଦିନଟିକୁ ଦେଶବାସୀମାନଙ୍କୁ ଗଣପ୍ରାର୍ଥନା ଓ ଗଣଅନସନର ଦିବସରୂପେ ପାଳନ କରିବାକୁ ଅନୁରୋଧ କରୁଛି। ଜାତି ଧର୍ମ ନିର୍ବିଶେଷରେ ପ୍ରତ୍ୟେକ ଲୋକ ବିଶେଷତଃ ପ୍ରତ୍ୟେକ ମନ୍ତ୍ରୀ, ଶିକ୍ଷକ ଓ ପ୍ରତ୍ୟେକ ପରିବାରର ଗୃହକର୍ତ୍ତାମାନେ ଏହି ଦିବସଟିକୁ ଧର୍ମନିଷ୍ଠ ଓ ପବିତ୍ର ଭାବରେ ପାଳନ କରି ଆମ୍ଭର ପୂର୍ବ ଶାନ୍ତିପୂର୍ଣ୍ଣ ବାୟୁମଣ୍ଡଳ ଫେରି ପାଇବାକୁ ଅନୁରୋଧ କରୁଅଛି।

[ L. S. ] ପ୍ରମାଣ ସ୍ୱରୂପ ମାର୍କିଣ ଯୁକ୍ତରାଷ୍ଟ୍ରର ୮୬ତମ ସ୍ୱାଧୀନତା ଦିବସରେ ୧୮୬୧ ମସିହା ଅଗଷ୍ଟ ୧୨ ତାରିଖରେ ମାର୍କିଣ ଯୁକ୍ତରାଷ୍ଟ୍ରର ମୋହର ସହିତ ମୋର ନାମ ସ୍ୱାକ୍ଷର କରୁଅଛୁ।

ଅବ୍ରାହମ ଲିଙ୍କନ

## ମୂଳଧନ ଓ ଶ୍ରମ

୧୮୬୧ ମସିହା ଡିସେମ୍ବର ମାସରେ ଲିଙ୍କନ ଯେଉଁ ପ୍ରଥମବାର୍ଷିକ ବାର୍ତ୍ତା କଂଗ୍ରେସକୁ ପଠାଇଥିଲେ, ଯୁଦ୍ଧକାଳୀନ ଅବସ୍ଥା ଯୋଗୁଁ ଅନେକ ମୌଳିକ ବିଷୟ ଉପରେ ସେ ବିଶ୍ଳେଷଣ କରି ଆଲୋଚନା କରିଥିଲେ ଯେ ଯେଉଁ ଗୁଡ଼ିକ ଜାତୀୟ କଲ୍ୟାଣରେ ସହାୟକ ଥିଲା ସେଗୁଡ଼ିକ ପ୍ରତି ଦୃଷ୍ଟି ଦିଆଯାଇ ନଥିଲା । ମୂଳଧନ ଓ ଶ୍ରମର ସମ୍ପର୍କ ସେମାନଙ୍କ ମଧ୍ୟରୁ ଅନ୍ୟତମ ଥିଲା ।

......ଶ୍ରମ ମୂଳଧନ ଠାରୁ ମୌଳିକ ଏବଂ ସ୍ୱତନ୍ତ୍ର । ମୂଳଧନ କେବଳମାତ୍ର ହେଉଛି ଶ୍ରମର ଫଳ, ଏବଂ ମୂଳଧନର କଦାପି ଅସ୍ତିତ୍ୱ ନଥାନ୍ତା ଯଦି ପ୍ରଥମରେ ଶ୍ରମ ନଥାନ୍ତା । ଶ୍ରମ ମୂଳଧନ ଠାରୁ ଶ୍ରେଷ୍ଠତର ସ୍ଥାନ ଅଧିକାର କରିଥିବାରୁ ଅଧିକ କ୍ଷତିପୂରଣ ପାଇବାର ହକ୍‌ଦାର । ଅନ୍ୟ ଉପାଦାନମାନଙ୍କ ଭଳି ମୂଳଧନର ଅଧିକାର ମଧ୍ୟ ସମଭାବେ ସଂରକ୍ଷିତ । ଶ୍ରମ ଓ ମୂଳଧନର ଏକତ୍ର ବିନିଯୋଗରେ ପରସ୍ପର ଲାଭବାନ ହେଉଛନ୍ତି ଓ ହେବେ, ଏହା କେହି ଅସ୍ୱୀକାର କରିବ ନାହିଁ । ସମାଜର ସମସ୍ତ ଶ୍ରମର ସମ୍ପର୍କ ଏହିଭଳି ଏହା ଧରିନେବା ହିଁ ଭୁଲ । ମୁଷ୍ଟିମେୟ ଲୋକ ମୂଳଧନର ଅଧିକାରୀ ଏବଂ ସେମାନେ ନିଜପାଇଁ ଶ୍ରମ କରନ୍ତି ନାହିଁ ଏବଂ ସେମାନଙ୍କ ମୂଳଧନ ବଦଳରେ ଅଳ୍ପସଂଖ୍ୟକ ଶ୍ରମ ଭଡ଼ା ଆଣନ୍ତି କିମ୍ବା ଶ୍ରମ ଖରିଦ କରନ୍ତି । ସଂଖ୍ୟାଧିକ ଲୋକ ଏହି ଉଭୟ ଶ୍ରେଣୀର ଅନ୍ତର୍ଭୁକ୍ତ ନୁହନ୍ତି—ହୁଏତ ଅନ୍ୟମାନଙ୍କ ପାଇଁ ଶ୍ରମ କରନ୍ତି ନାହିଁ କିମ୍ବା ଅନ୍ୟମାନଙ୍କୁ ନିଜପାଇଁ ଶ୍ରମ କରାନ୍ତି ନାହିଁ । ଦକ୍ଷିଣାଂଶର ଅଧିକାଂଶ ପ୍ରଦେଶରେ ସଂଖ୍ୟାଧିକ ଲୋକ ପ୍ରଭୁ ନୁହଁନ୍ତି କିମ୍ବା ଦାସ ନୁହଁନ୍ତି ; ଉତ୍ତରାଂଶରେ ସଂଖ୍ୟାଧିକ ଲୋକ ଶ୍ରମ କ୍ରୟ କରନ୍ତି ନାହିଁ କିମ୍ବା ବିକ୍ରୟ କରନ୍ତି ନାହିଁ । ଲୋକମାନେ ସେମାନଙ୍କର ପରିବାରର ସ୍ତ୍ରୀ, ପୁତ୍ର, ଝିଅମାନଙ୍କୁ ସଙ୍ଗରେ ନେଇ କୃଷିକ୍ଷେତ୍ରରେ, ଗୃହରେ ଏବଂ ଦୋକାନ ବଜାରରେ କାର୍ଯ୍ୟ କରନ୍ତି, ଉତ୍ପାଦିତ ପଦାର୍ଥ ଦ୍ୱାରା ଜୀବନ ଧାରଣ କରନ୍ତି ଏବଂ ସେମାନଙ୍କର ମୂଳଧନର ପ୍ରୟୋଜନ ହୋଇ ନଥାଏ, ଶ୍ରମିକ ଭଡ଼ା ଆଣିବା କିମ୍ବା ଦାସମାନଙ୍କୁ ଖଟାଇବାର ପ୍ରୟୋଜନ ମଧ୍ୟ ହୋଇଥାଏ । କେତେକ ଲୋକ ସେମାନଙ୍କ ନିଜର ଶ୍ରମ ସହିତ ଅପରର ଶ୍ରମକୁ ମୂଳଧନ ବଦଳରେ ଦରକାର ବେଳେ ଖରିଦ କରି ବିନିଯୋଗ କରନ୍ତି ; ଏହା ଏକ ମିଶ୍ରିତ ଶ୍ରେଣୀ, କିନ୍ତୁ ଏହା ଏକ ସ୍ୱତନ୍ତ୍ର ଶ୍ରେଣୀ ନୁହେଁ । କୌଣସି ମୌଳିକ ତଥ୍ୟ ଏହି ମିଶ୍ରିତ ଶ୍ରେଣୀ ଦ୍ୱାରା ବିଶୃଙ୍ଖଳ ହୁଏ ନାହିଁ ।

ପୁଣି, ପୂର୍ବେ ଯାହା ଆଲୋଚନା ହୋଇ ଯାଇଅଛି ସେଠାରେ ପ୍ରତିଦାନ ପାଉନଥିବା କୌଣସି ଶ୍ରମିକ ନାହିଁ । କିଛି ବର୍ଷ ପୂର୍ବେ ଏହି ପ୍ରଦେଶମାନଙ୍କରେ କେତେକ ସ୍ୱାଧୀନ ଲୋକ ତାଙ୍କର ଜୀବନ କାଳ ମଧ୍ୟରେ କିଛିଦିନ ପାଇଁ ଭଡ଼ାଟିଆ ଶ୍ରମିକ ଥିଲେ । ଦୂରଦର୍ଶୀ କପର୍ଦ୍ଦକ ଶୂନ୍ୟ ଦରିଦ୍ର ପ୍ରଥମରେ ମଜୁରୀ ପାଇଁ ଶ୍ରମକରି ବଳକା ଅର୍ଥ ସଞ୍ଚୟ କରେ; ସେହି ସଞ୍ଚିତ ଅର୍ଥ ଦ୍ୱାରା ନିଜର ଯନ୍ତ୍ରପାତି କିମ୍ବା ଜମି ଖରିଦ କରେ; ତତ୍‌ପରେ କିଛି ସମୟ ପାଇଁ ନିଜ କ୍ଷେତ୍ରରେ ପରିଶ୍ରମ କରେ ଏବଂ ଶେଷରେ ନିଜ ଅର୍ଥଦ୍ୱାରା ଅନ୍ୟ ଆରମ୍ଭ-କାରୀ ମଜୁରିଆ ମାନଙ୍କୁ ସାହାଯ୍ୟ କରେ । ଏହି ସାହାଯ୍ୟକାରୀ ଉନ୍ନତ ଅନୁସୃତ ପ୍ରଣାଳୀ ସମସ୍ତଙ୍କୁ ନୂତନ

ଅଂଶ ଦାନ କରିବା ଫଳରେ ସମସ୍ତଙ୍କ ପକ୍ଷରେ ଉନ୍ନତି ସମ୍ଭବ ହୋଇଥାଏ । ବରଂ, ଯେଉଁମାନେ କି ଦାରିଦ୍ର୍ୟତାର ଚରମ କଷାଘାତ ମଧ୍ୟରେ ଗଢ଼ି ଉଠିଛନ୍ତି ଯେଉଁମାନେ ସତ୍ ଉପାୟରେ ଅର୍ଜିତ ପଦାର୍ଥ ବ୍ୟତୀତ ଅନ୍ୟକିଛି ସ୍ପର୍ଶ କରନ୍ତି ନାହିଁ, ସେମାନେ ଧନଶାଳୀ ଲୋକମାନଙ୍କ ଅପେକ୍ଷା କୌଣସି ଗୁଣରେ ଅପକୃଷ୍ଟ ନୁହନ୍ତି ।

## ସନ୍ଧିଯୁକ୍ତ ଜିଲାମାନଙ୍କରେ ଦାସମାନଙ୍କୁ ମୁକ୍ତି

୧୮୬୨ ମସିହା ଏପ୍ରିଲ ମାସରେ କଂଗ୍ରେସ ଦାସପ୍ରଥାର ବିଲୋପ ସାଧନ ପାଇଁ ପ୍ରଥମ ଉଦ୍ୟମ କଲେ ଯେତେବେଳେ ଏହା ଜାତୀୟ ରାଜଧାନୀରେ ଅନ୍ତର୍ଭୁକ୍ତ କରାଯାଇଥିବା ସନ୍ଧିଯୁକ୍ତ ଜିଲାମାନଙ୍କରୁ (federal districts) ଦାସମାନଙ୍କୁ ମୁକ୍ତି ଦେଲେ । ଲିଙ୍କନ ସେହି ଆଇନ ପତ୍ରରେ ଶୀଘ୍ର ସ୍ୱାକ୍ଷର କରି କଂଗ୍ରେସକୁ ଜଣାଇ ଦେଲେ ।

**ସିନେଟର ସହକର୍ମୀଗଣ ଓ ବ୍ୟବସ୍ଥାପକ ସଭାର ପ୍ରତିନିଧିଗଣ :**

ଅଭିହିତ ଆଇନପତ୍ରଟି "କଲମ୍ବିଆ ଜିଲାରେ କେତେକ ଲୋକଙ୍କୁ ଆବଦ୍ଧ କରାଯାଇଥିବା କାର୍ଯ୍ୟ ବା ଶ୍ରମରୁ ମୁକ୍ତି" ପାଇଁ ଏହି ଦିବସରେ ଅନୁମୋଦିତ ହୋଇ ସ୍ୱାକ୍ଷରିତ ହେଲା ।

କଂଗ୍ରେସର ସାମ୍ବିଧାନିକ କ୍ଷମତାନୁଯାୟୀ ଏହିଜିଲାରୁ ଦାସ ପ୍ରଥାର ବିଲୋପ ସାଧନ କରିବା ସମ୍ପର୍କରେ ମୋର କୌଣସି ସନ୍ଦେହ ନାହିଁ ଏବଂ ମୁଁ ସର୍ବଦା ଇଚ୍ଛା କରେ ଯେ ଜାତୀୟ ରାଜଧାନୀ ସମସ୍ତ ପ୍ରକାର ପ୍ରତିଷ୍ଠାନ ଗୁଡ଼ିକୁ ସନ୍ତୋଷ ଜନକ ଭାବେ ମୁକ୍ତି ଦାନ କରୁ । ତେଣୁ ମୋ ମନରେ ଏ ବିଷୟରେ କୌଣସି ପ୍ରଶ୍ନ ଜାଗ୍ରତ ହୁଏ ନାହିଁ କେବଳ ମାତ୍ର ପ୍ରତ୍ୟେକ ସ୍ଥଳର ଉପଯୋଗୀତା ବ୍ୟତୀତ । ଯଦି କୌଣସି କୌଣସି ବିଷୟ ଏହି ନିୟମର ମଧ୍ୟରେ କିମ୍ବା ବାହାରେ ଥାଇ ସୁଦ୍ଧା ମୋର ବିଚାର ଶକ୍ତି ଅନୁଯାୟୀ ଆଶାନୁରୂପ ଗତି କରୁଥାଏ ତାହାହେଲେ ମୁଁ ତାକୁ ନିର୍ଦ୍ଦେଶ କରିବାକୁ ଚାହେଁନା ।

## ମୁକ୍ତି ଘୋଷଣା

୧୮୬୨ ମସିହା ୨୨ ତାରିଖରେ ଲିଙ୍କନ ତାଙ୍କର ମନ୍ତ୍ରୀସଭା ଆହ୍ୱାନ କରିଥିଲେ ଏବଂ ସେଥିରେ ତାଙ୍କର ଲିଖିତ ପତ୍ରଟିକୁ ପାଠ କରିଥିଲେ । ଏହା ଏକ ଗୁରୁତ୍ୱପୂର୍ଣ୍ଣ ମୁକ୍ତି ଘୋଷଣାପତ୍ର ଥିଲା ।

ମୁ, ଆବ୍ରାହମ ଲିଙ୍କନ, ମାର୍କିଣ ଯୁକ୍ତରାଷ୍ଟ୍ରର ସଭାପତି ଏବଂ ସେନାବାହିନୀ ଓ ନୌବାହିନୀର ପ୍ରଧାନ ସେନାପତି ହିସାବରେ ଏହା ଘୋଷଣା କରେ ଯେ ଯୁକ୍ତରାଷ୍ଟ୍ର ଅତୀତ ପରି ଭବିଷ୍ୟତରେ ପ୍ରତ୍ୟେକ ନାଗରିକ ଓ ପ୍ରତ୍ୟେକ ପ୍ରଦେଶ ମଧ୍ୟରେ ସାମ୍ବିଧାନିକ ସମ୍ପର୍କ ପ୍ରତିଷ୍ଠା ପାଇଁ ଯେଉଁଠାରେ ବିଳମ୍ବ ବା ବିଶୃଙ୍ଖଳା ସୃଷ୍ଟି ହେବ ସେଠାରେ ସେହି ଲକ୍ଷ୍ୟ ହାସଲ ପାଇଁ ଯୁଦ୍ଧର ଅନୁସରଣ କରିବ ।

ମୋର ଉଦ୍ଦେଶ୍ୟ କଂଗ୍ରେସର ଆସନ୍ନ ବୈଠକରେ ତଥାକଥିତ ଦାସପ୍ରଥା ପ୍ରଚଳିତ ପ୍ରଦେଶମାନଙ୍କୁ ଆର୍ଥିକ ସାହାଯ୍ୟ ଦେବାପାଇଁ ଉପଯୁକ୍ତ ବ୍ୟବସ୍ଥା କରିବାକୁ ପ୍ରସ୍ତାବ ଦେବି । ସେମାନେ ତାହା ଗ୍ରହଣ କରି ପାରନ୍ତୁ ବା ନପାରନ୍ତୁ, ଫଳରେ ଭବିଷ୍ୟତରେ ସେଠାକାର ଲୋକମାନେ ମାର୍କିଣ ଯୁକ୍ତରାଷ୍ଟ୍ର ବିରୁଦ୍ଧରେ ଯୁଦ୍ଧ କରିବାକୁ ସମ୍ମତ ହେବେନାହିଁ ଏବଂ କେତେକ ପ୍ରଦେଶ ସ୍ୱତଃପ୍ରବୃତ୍ତ ହୋଇ ଶୀଘ୍ର ଦାସପ୍ରଥା ଲୋପ କରିବେ ବା କ୍ରମେ କ୍ରମେ ଲୋପ କରିବାକୁ ସ୍ୱତଃପ୍ରବୃତ୍ତ ହେବେ···

ଆମ୍ଭର ଧର୍ମଦାତାଙ୍କ ନାମାନୁଯାୟୀ ପ୍ରଚଳିତ ବର୍ଷ ୧୮୬୩ ମସିହା ଜାନୁୟାରୀ ୧ ତାରିଖରେ ଦାସ ପ୍ରଥା ପ୍ରଚଳନକାରୀ ପ୍ରଦେଶ ମାନଙ୍କର ସମସ୍ତ ଦାସମାନଙ୍କୁ ମୁକ୍ତିଦାନ କରାଯିବ; ଏବଂ ମାର୍କିଣ ଯୁକ୍ତରାଷ୍ଟ୍ରର ସରକାର, ସୈନ୍ୟ ବିଭାଗ ଓ ନୌବିଭାଗ ଦାସତ୍ୱ ବନ୍ଧନରୁ ମୁକ୍ତ ପାଇଥିବା ଲୋକମାନଙ୍କର ସାର୍ବଭୌମ କ୍ଷମତା ସ୍ୱୀକାର କରିବେ ଏବଂ ସେମାନଙ୍କ ମଧ୍ୟରୁ ଯେ କୌଣସି ଲୋକ ଯେକୌଣସି ଚେଷ୍ଟାରେ ସେମାନଙ୍କର ପ୍ରକୃତ ମୁକ୍ତିକୁ ଉପାର୍ଜନ କରି ପାରନ୍ତୁ ।

## ଐଶ୍ୱରିକ ମତବାଦ

*ଏପରିକି ହ୍ୱାଇଟ୍ ହାଉସ (White House) ରେ ଲିଙ୍କନ ତାଙ୍କର ଧ୍ୟାନ ସଂବନ୍ଧରେ ଲେଖିବାକୁ ସମୟ ପାଉଥିଲେ । ଯୁଦ୍ଧ, ପରାଜୟ ଓ ଅସନ୍ତୋଷରୁ ଗୋଟିକ ପରେ ଗୋଟିଏ ଟାଣି ଆଣୁଥିଲା ଯେତେବେଳେ, ୧୮୬୨ ମସିହା ସେପ୍ଟେମ୍ବର ମାସରେ ସେ ଐଶ୍ୱରିକ ମତବାଦ ସଂବନ୍ଧରେ କେତେକ ଅଭିମତ ଲେଖିବାକୁ ବିଶ୍ୱାସ କରୁଥିଲେ ।*

ଈଶ୍ୱରଙ୍କ ଇଚ୍ଛା ହିଁ ସର୍ବଦା ଜୟଲାଭ କରିଥାଏ । ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ମଧ୍ୟରେ ପ୍ରତ୍ୟେକ ପକ୍ଷ ଈଶ୍ୱରଙ୍କ ଇଚ୍ଛାନୁସାରେ କାର୍ଯ୍ୟ କରୁଛନ୍ତି ବୋଲି ଦାବି କରନ୍ତି । ଉଭୟ ପକ୍ଷ ନହେଲେ ମଧ୍ୟ ଗୋଟିଏ ପକ୍ଷ ନିଶ୍ଚୟ ଭୁଲ କରିବ । ଈଶ୍ୱର ଏକ ସମୟରେ ଏକ ବିଷୟରେ ଅନୁକୂଳ ଓ ପ୍ରତିକୂଳ ମତ ଦେଇ ନ ପାରନ୍ତି । ବର୍ତ୍ତମାନ ଅନ୍ତର୍ଯୁଦ୍ଧରେ ଏହା ସମ୍ପୂର୍ଣ୍ଣରୂପେ ବିଶ୍ୱାସ ଯୋଗ୍ୟ ଯେ ଈଶ୍ୱରଙ୍କ ମତ ଉଭୟ

ପକ୍ଷର ମତବାଦ ଠାରୁ ସମ୍ପୂର୍ଣ୍ଣ ଭିନ୍ନ; ତଥାପି ମନୁଷ୍ୟମାନେ ଠିକ୍ ଯାହା କରିବାର କଲେ ମଧ୍ୟ ଈଶ୍ୱରଙ୍କ ଉଦ୍ଦେଶ୍ୟ ସାଧନରେ ବିଶେଷ ସହାୟକ । ମୁଁ ସର୍ବଦା କହିବାକୁ ପ୍ରସ୍ତୁତ ଯେ ଏହା ସତ୍ୟ ବୋଲି ସମ୍ଭବ ହୋଇପାରେ; ଈଶ୍ୱର ଏହି ଯୁଦ୍ଧ ଚାହାଁନ୍ତି ଏବଂ ସେହି ଇଚ୍ଛା ଏପର୍ଯ୍ୟନ୍ତ ଶେଷ ହୋଇନାହିଁ । ପ୍ରତିଦ୍ୱନ୍ଦୀ ମାନଙ୍କ ମଧ୍ୟରେ ଏହି ମତ ଜାଗ୍ରତ ହୋଇ ପାରେ ଯେ ଈଶ୍ୱର ତାଙ୍କର ସାମାନ୍ୟ କ୍ଷମତା ପ୍ରୟୋଗ କରି ମନୁଷ୍ୟ ମାନଙ୍କ ପ୍ରତିଦ୍ୱନ୍ଦୀତା ବ୍ୟତୀତ ଏହି ଦେଶକୁ ରକ୍ଷା କରି ପାରିଥାନ୍ତେ କିମ୍ବା ବିନଷ୍ଟ କରି ପାରିଥାନ୍ତେ, ତଥାପି ପ୍ରତିଦ୍ୱନ୍ଦୀତା ଚାଲିଲା । ଆରମ୍ଭ ହେବା ପରେ ସେ ଉଭୟ ପକ୍ଷକୁ ଯେକୌଣସି ଦିନରେ ଜୟଯୁକ୍ତ କରିପାରିଥିଲେ । ତଥାପି ଯୁଦ୍ଧ ଚାଲିଛି ।

## ଦାସଅଧିକାରୀ ମାନଙ୍କୁ କ୍ଷତି ପୂରଣ

୧୮୬୨ ମସିହାରେ ଲିଙ୍କନ ଯେଉଁ ବାର୍ଷିକବାର୍ତ୍ତା କଂଗ୍ରେସକୁ ପଠାଇଲେ ସେଥିରେ ସେ ସ୍ୱାଧୀନତା ଘୋଷଣା ପତ୍ରର ପ୍ରତିଜ୍ଞା ପରି ସଂବିଧାନ ଉପରେ ଏକ ସଂଶୋଧନ ପ୍ରସ୍ତାବ ଆଣିଥିଲେ ଯେଉଁଥିରେ ସେ ପ୍ରସ୍ତାବ କରିଥିଲେ ଯେ ଯେଉଁ ସମସ୍ତ ପ୍ରଦେଶ ସ୍ୱତଃପ୍ରବୃତ୍ତ ହୋଇ ଦାସ ପ୍ରଥାର ବିଲୋପ ସାଧନ କରିବ ସେହି ପ୍ରଦେଶର ଦାସମାନଙ୍କୁ ଫେଡେରାଲ ସରକାର କ୍ଷତି ପୂରଣ ଦେବ । ସେ ତଥାପି ଆଶା କରିଥିଲେ ଯେ ଦାସପ୍ରଥା ପ୍ରଚଳନକାରୀ ପ୍ରଦେଶ ଗୁଡ଼ିକ ବିଦ୍ରୋହୀଙ୍କ ଅନୁଯାୟୀ ମିଳିତ ଯୁକ୍ତରାଷ୍ଟ୍ରକୁ ଫେରି ଆସିବେ ଏବଂ ଏହା ବିଶଦ ଭାବରେ ତାଙ୍କ ଭାଷଣରେ କୁହା ଯାଇଥିଲା ।

…କେବଳମାତ୍ର ବଳ ପ୍ରୟୋଗ ବ୍ୟତୀତ ପରିକଳ୍ପନାଟି ଖୁବ୍ ଶୀଘ୍ର ଶାନ୍ତି ସ୍ଥାପନ କରିବ ଏବଂ ଏହା ଖୁବ୍ ସ୍ଥାୟୀ ଭାବରେ ପରିଚାଳନା କରିବ ବୋଲି ମୁଁ ନିଶ୍ଚିତ……

ମୁଁ ଯେଉଁ ପରିକଳ୍ପନାର ପ୍ରସ୍ତାବ ଦେଇଛି ଯଦି ଗ୍ରହଣ କରାଯାଏ, ତାହାହେଲେ ତାହା ଯୁଦ୍ଧ ହ୍ରାସ କରିବା ସଙ୍ଗେ ସଙ୍ଗେ ଅର୍ଥ ଓ ରକ୍ତପାତର ମାତ୍ରା ମଧ୍ୟ ହ୍ରାସ କରିବ ବୋଲି ଏହା ସନ୍ଦେହ ଜନକ କି ? ଏହା ଜାତୀୟ କ୍ଷମତା ଓ ଜାତୀୟ ଉନ୍ନତି ଉଭୟକୁ ଅନିର୍ଦ୍ଦିଷ୍ଟ କାଳପାଇଁ ସ୍ଥାୟୀକରି ପୁନଃ ପ୍ରତିଷ୍ଠା କରିବ ବୋଲି ସନ୍ଦେହ ଜନକ କି ? ଏହା ସନ୍ଦେହଜନକ କି ଯେ ଆମ୍ଭେମାନେ ଏଠାରେ କଂଗ୍ରେସ ଏବଂ

ଶାସନକର୍ତ୍ତା ନିର୍ଭୟରେ ଏହା ଗ୍ରହଣ କରି ପାରନ୍ତି କି ? ଭଲ ଲୋକମାନେ ଆମ୍ଭର ଏହି ମିଳିତ ଓ ଅକପଟ ପ୍ରାର୍ଥନାକୁ ଶୁଣିବେନାହିଁ କି ? ଆମ୍ଭେମାନେ କିମ୍ବା ସେମାନେ ଅନ୍ୟ କୌଣସି ଉପାୟରେ ଏହି ବିରାଟ ଲକ୍ଷ୍ୟକୁ ଏପରି ନିଶ୍ଚିତ ଭାବରେ ଏବଂ ଏତେ ଶୀଘ୍ର ଦୃଢ଼ୀଭୂତ କରି ପାରିବା କି ? ଆମ୍ଭେମାନେ କେବଳମାତ୍ର ଏକମତ ହୋଇ ଜୟଯୁକ୍ତ ହୋଇ ପାରିବା ଏହା ନୁହେଁ "ଆମ୍ଭମାନଙ୍କ ମଧ୍ୟରୁ କେହି ଉନ୍ନତତର ଭାବରେ ଚିନ୍ତା କରି ପାରିବେ ?" କିନ୍ତୁ, "ଆମ୍ଭେ ସମସ୍ତେ ଉନ୍ନତତର କରି ପାରିବା କି ?" ଯେ କୌଣସି ଲକ୍ଷ୍ୟ ସମ୍ଭବପର ହେଉନା କାହିଁକି ତଥାପି ପ୍ରଶ୍ନ ଆସେ "ଆମ୍ଭେମାନେ ଉନ୍ନତତର କରି ପାରିବା କି ?" ଅତୀତର ନୀତିବାକ୍ୟ ଗୁଡ଼ିକ ବର୍ତ୍ତମାନ ଉଦ୍‌ବେଗଜନକ ସମୟରେ ପ୍ରଚୁର ନୁହେଁ। ସମୟଟି ଜଟିଳ ସମସ୍ୟାରେ ସ୍ତୁପୀକୃତ, ଏବଂ ଆମ୍ଭେମାନେ ସମୟ ସହିତ ନିଶ୍ଚୟ ଜାଗ୍ରତ ହେବା। ଆମ୍ଭର ସମସ୍ୟାଟି ନୂତନ ବୋଲି ଆମ୍ଭେମାନେ ନିଶ୍ଚୟ ନୂତନରୂପେ ଚିନ୍ତା ଏବଂ କାର୍ଯ୍ୟ କରିବା। ଆମ୍ଭେମାନେ ନିଜକୁ ନିଜେ ନିଶ୍ଚୟ ଦାସତ୍ୱ ବନ୍ଧନରୁ ମୁକ୍ତ କରିବା ଏବା ତପରେ ଆମ୍ଭର ଦେଶକୁ ରକ୍ଷା କରିବା।

ସହ-ନାଗରିକଗଣ, ଆମ୍ଭେମାନେ ଅତୀତକୁ ରକ୍ଷା କରିପାରିବା ନାହିଁ। ଏହି କଂଗ୍ରେସ ଓ ଏହି ଶାସନର ଆମ୍ଭମାନଙ୍କ ବ୍ୟତୀତ ସ୍ମରଣୀୟ ହୋଇ ରହିବେ। କୌଣସି ବ୍ୟକ୍ତିଗତ ଗୁରୁତ୍ୱ କିମ୍ବା ନୀଚତା ଅନ୍ୟକୁ ବା ଅପରକୁ ରକ୍ଷା କରି ପାରିବନାହିଁ। ଯେଉଁ ଅଗ୍ନି ପରୀକ୍ଷା ମଧ୍ୟଦେଇ ଆମ୍ଭେମାନେ ଅତିକ୍ରମ କରୁଛୁ ତାହା ଆମ୍ଭମାନଙ୍କୁ ପରବର୍ତ୍ତୀ କାଳରେ ସମ୍ମାନ କିମ୍ବା ଅସମ୍ମାନରେ ଭୂଷିତ କରିବ। ଆମ୍ଭେମାନେ କହୁଁ ଆମ୍ଭେମାନେ ରାଷ୍ଟ୍ରପାଇଁ। ଆମ୍ଭମାନଙ୍କର ଏହି ବାକ୍ୟ ପୃଥିବୀ ଭୁଲିବ ନାହିଁ। ଆମ୍ଭେମାନେ ଜାଣୁ ରାଷ୍ଟ୍ରକୁ କିପରି ରକ୍ଷା କରିବାକୁ ହେବ। ଏପରିକି ଆମ୍ଭେ ଏଠାରେ—କ୍ଷମତାରେ ଅଧିଷ୍ଠିତ ହୋଇଛୁଁ ଏବଂ ଦାୟିତ୍ୱ ବହନ କରୁଛୁଁ। ଦାସମାନଙ୍କୁ ସ୍ୱାଧୀନତା ଦାନ କରି ଆମ୍ଭେମାନେ ସ୍ୱାଧୀନମାନଙ୍କର ସ୍ୱାଧୀନତାକୁ ଦୃଢ଼ୀଭୂତ କରିଛେ—ଆମ୍ଭେମାନେ ଯାହା ଯାହା ଦାନକରୁ ଏବଂ ରକ୍ଷା କରୁ ତାକୁ ସମଭାବରେ ସମ୍ମାନ ଦେଉଁ। ପୃଥିବୀର ସର୍ବୋତ୍କୃଷ୍ଟ ଶେଷ ଆଶାକୁ ଆମ୍ଭେମାନେ ମହତ ଭାବରେ ରକ୍ଷା କରିବା କିମ୍ବା ନୀଚ ଭାବରେ ହରାଇବା। ଅନ୍ୟ ଉପାୟ ସଫଳ ହୋଇପାରେ; ଏହା ବିଫଳ ହୋଇ ନଥିଲା। ମାର୍ଗଟି ପରିଷ୍କାର, ଶାନ୍ତିପ୍ରଦ, ଦାନଶୀଳ ଓ ଯଥାର୍ଥ—ଯଦି ମାର୍ଗଟି ଅନୁସରଣ କରାଯାଏ ତାହାହେଲେ ପୃଥିବୀ ସବୁଦିନ ପାଇଁ ଉଚ୍ଛ୍ୱସିତ ପ୍ରଶଂସା କରିବ ଏବଂ ଈଶ୍ୱର ନିଶ୍ଚୟ ସବୁଦିନ ପାଇଁ ଆଶୀର୍ବାଦ କରିବେ।

## ଜେନେରାଲ ସୈନ୍ୟାଧ୍ୟକ୍ଷଙ୍କୁ ପତ୍ର

ଯୁଦ୍ଧର ପ୍ରଥମ ବର୍ଷରେ ସୈନ୍ୟାଧ୍ୟକ୍ଷଙ୍କ ନେତୃତ୍ୱ ସମ୍ବନ୍ଧରେ ଲିଙ୍କନଙ୍କର ନୈପୁଣ୍ୟତା ଐତିହାସିକ ଭାବେ ଜଣାଶୁଣା। ଏକ ସମୟରେ ଉପର ମହଲରେ ଅନେକ ପରିବର୍ତ୍ତନ ନେଇ ସେ ଜେନେରାଲ ନୂତନ ପଦଧାରୀ ସୈନ୍ୟାଧ୍ୟକ୍ଷଙ୍କ ଆଦର୍ଶ ରୂପେ ଏକ ସିଧାସଳଖ ପତ୍ର ଲେଖିଲେ।

ଶାସନ ବିଭାଗୀୟ କାର୍ଯ୍ୟାଳୟ
ଓ୍ୱାସିଂଟନ୍, ଜାନୁୟାରୀ ୨୬, ୧୮୬୩

ମୁଖ୍ୟ ସୈନ୍ୟାଧ୍ୟକ୍ଷ ହୁକର
ସୈନ୍ୟାଧ୍ୟକ୍ଷ !

ପୋଟୋମାକ୍ ସୈନ୍ୟବାହିନୀରେ ମୁଁ ଆପଣଙ୍କୁ ସର୍ବୋଚ୍ଚ ସ୍ଥାନରେ ଅଧିଷ୍ଠିତ କରିଅଛି। ଏଥିପାଇଁ ଅବଶ୍ୟ ଉପଯୁକ୍ତ କାରଣ ପାଇଥିବାରୁ ଏହା ମୁଁ କରିଅଛି, ଏବଂ ତଥାପି ମୁଁ ଭାବେ ଏହା ତୁମ ପକ୍ଷରେ

ଜାଣିବା ଅନ୍ୟତମ ଯେ ମୁଁ କେତେକ ବିଷୟ ନେଇ ତୁମ କାର୍ଯ୍ୟରେ ସମ୍ପୂର୍ଣ୍ଣରୂପେ ସନ୍ତୁଷ୍ଟ ନୁହେଁ। ତୁମେ ଜଣେ ସାହସୀ ଏବଂ ଦକ୍ଷ ସୈନାଧ୍ୟକ୍ଷ ହେବାକୁ ମୁଁ ବିଶ୍ୱାସ କରେ, ତାହା ଅବଶ୍ୟ ମୁଁ ଚାହେଁ। ତୁମେ ଯେଉଁ କାର୍ଯ୍ୟରେ ନିପୁଣ ସେ କାର୍ଯ୍ୟସହିତ ରାଜନୀତିକୁ ମିଶ୍ରଣ କରନାହିଁ ବୋଲି ମୁଁ ବିଶ୍ୱାସ କରେ। ତୁମେ ତୁମ ନିଜ ଉପରେ ଆସ୍ଥା ରଖିଛ ଯଦିଓ ତାହା ଖୁବ୍ ଅତ୍ୟାବଶ୍ୟକ ନୁହେଁ। ତୁମେ ଜଣେ ଉଚ୍ଚାଭିଳାଷୀ ଏବଂ ସେହି ଅଭିଳାଷ ନ୍ୟାୟସଙ୍ଗତ ସୀମା ମଧ୍ୟରେ ଅପକାର କରିବା ବ୍ୟତୀତ ବରଂ ଉପକାର କରେ। କିନ୍ତୁ ମୁଁ ଭାବେ ଯେ ସୈନାଧ୍ୟକ୍ଷ ବରନସାଇଡ଼ (Gen. Burnside)ଙ୍କ ସେନାପତିତ୍ୱ ସମୟରେ ତୁମେ ନିଜର ଅଭିଳାଷର ବଶବର୍ତ୍ତୀହୋଇ ତାଙ୍କ କାର୍ଯ୍ୟରେ ଯଥାସାଧ୍ୟ ପ୍ରତିବନ୍ଧକ ସୃଷ୍ଟିକଲ ଫଳରେ ଦେଶର ତଥା ଜଣେକ ସମ୍ମାନାର୍ହ୍ୟ ଏବଂ ବିଜ୍ଞ ସହକର୍ମୀର ମଧ୍ୟ ଯଥେଷ୍ଟ କ୍ଷତିକଲ। ସୈନ୍ୟବାହିନୀ ଓ ସରକାର ଉଭୟ ନିୟନ୍ତ୍ରଣ ପାଇଁ ନିରଙ୍କୁଶ କ୍ଷମତାପନ୍ନ ବ୍ୟକ୍ତି (Dictator) ଦରକାର ବୋଲି ବିଶ୍ୱାସ କରି ନିକଟରେ ଯାହା କହିଛ ତାହା ମୁଁ ଶୁଣିଅଛି। ଏହାସତ୍ତ୍ୱେ ମୁଁ ତୁମକୁ ଆଦେଶ ଦେଇଅଛି ଯେ ଏହା ଏଥିପାଇଁ ନଥିଲା। ଯେଉଁ ସୈନାଧ୍ୟକ୍ଷମାନେ କୃତକାର୍ଯ୍ୟହେବେ ସେମାନେହିଁ କେବଳମାତ୍ର ନିରଙ୍କୁଶ କ୍ଷମତାପନ୍ନ ବ୍ୟକ୍ତିମାନଙ୍କୁ ଅଧିଷ୍ଠିତ କରାଇ ପାରିବେ।

ବର୍ତ୍ତମାନ ମୁଁ ତୁମକୁ ସାମରିକ ସଫଳତା ବିଷୟରେ ପଚାରୁଛି ଏବଂ ଏକନାୟକତ୍ୱ (Dictatorship)ର ଭାର ମୁଁ ନେବି। ସରକାର ଅନ୍ୟ ସମସ୍ତ ସୈନାଧ୍ୟକ୍ଷମାନଙ୍କୁ ଯେପରି ସାହାଯ୍ୟ କରିଅଛି ଏବଂ କରିବ ସେହି ଭାବରେ ତୁମକୁ ତାହାର ପୂର୍ଣ୍ଣ କ୍ଷମତାନୁଯାୟୀ ସାହାଯ୍ୟ କରିବ ଯାହା ଅନ୍ୟମାନଙ୍କଠାରୁ କମ ନୁହେଁ କିମ୍ବା ବେଶି ନୁହେଁ। ମୁଁ ଖୁବ ଭୟକରେ ଯେ ତୁମେ ଯେଉଁ ପ୍ରେରଣାକୁ ସୈନ୍ୟବାହିନୀ ମଧ୍ୟରେ ସଂଚରିତ କରି ସେମାନଙ୍କର ସେନାଧ୍ୟକ୍ଷଙ୍କୁ ସମାଲୋଚନା କରିଛ ଏବଂ ତାଙ୍କଠାରୁ ବିଶ୍ୱାସ ତୁଟାଇଛ ବର୍ତ୍ତମାନ ତାହା ତୁମ ଉପରକୁ ପ୍ରତିଫଳିତ ହେବ। ମୁଁ ଯେତେଦୂର ପାରେ ସେତେଦୂର ଏହାକୁ ଦମନ କରିବାକୁ ଚେଷ୍ଟା କରିବି। ତୁମକଥା ଦୂରେ ଥାଉ, ଯେଉଁଠି ଏହି ପ୍ରକାର ପ୍ରେରଣା ଅଛି ଏପରିକି ନେପୋଲିଅନ ଯଦି ଜୀବିତ ଥାନ୍ତେ ସେ ସୈନ୍ୟବାହିନୀରୁ କୌଣସି ପ୍ରକାର ଉପକାର ପାଇ ନଥାନ୍ତେ।

ବର୍ତ୍ତମାନ ହଠକାରିତା ନୀତି ପାଇଁ ସାବଧାନ ହୁଅ। ହଠକାରିତା ନୀତି ପାଇଁ ସାବଧାନ ହୁଅ କିନ୍ତୁ ଶକ୍ତି ଓ ନିଦ୍ରାହୀନ ସତର୍କତା ସହିତ ଆଗେଇ ଯାଅ ଏବଂ ଆମ୍ଭମାନଙ୍କୁ ଜୟଯୁକ୍ତ କରାଅ।

ତୁମର ବିଶ୍ୱସ୍ତ

ଏ, ଲିଙ୍କନ

## ଧନ୍ୟବାଦଜ୍ଞାପନ ଦିବସ ଘୋଷଣା

ଯୁଦ୍ଧର ଦୁଃଖ ଏବଂ ଦୁର୍ବିପାକ ମଧ୍ୟରେ ଜାତିଉପରେ ଭଗବାନଙ୍କର ଯେଉଁ ଆଶୀର୍ବାଦ ବର୍ଷଣ ହୋଇଥିଲା, ସେଥିପାଇଁ ଧନ୍ୟବାଦ ଜ୍ଞାପନ କରିବାକୁ ଗୋଟିଏ ଦିବସ ପୃଥକ କରିବାକୁ ଲିଙ୍କନ ଜାତିକୁ ଆହ୍ୱାନ କରିଥିଲେ। ଏହିପରି ଭାବରେ ଧନ୍ୟବାଦ ଜ୍ଞାପନ ଦିବସଟି ମାର୍କିଣ ଯୁକ୍ତରାଷ୍ଟ୍ରରେ ଜାତୀୟ ଛୁଟି ଦିନ ରୂପେ ଧାର୍ଯ୍ୟ ହୋଇଥିବାର ପ୍ରମାଣ ମିଳେ।

ମାର୍କିଣ ଯୁକ୍ତରାଷ୍ଟ୍ରର ସଭାପତିଙ୍କ କର୍ତ୍ତୃକ :

## ଗୋଟିଏ ଘୋଷଣା

ଯେଉଁ ବର୍ଷଟି ଅବସାନ ହେବାକୁ ଯାଉଅଛି ତାହା ଶସ୍ୟଶ୍ୟାମଳ କ୍ଷେତ୍ର ଓ ସ୍ୱାସ୍ଥ୍ୟପୂର୍ଣ୍ଣ ବାୟୁମଣ୍ଡଳରେ ଆଶୀର୍ବାଦପୁଷ୍ଟ । ଏହି ସକଳ ପ୍ରାଚୁର୍ଯ୍ୟ ଉପଭୋଗ କରିବାରେ ଆମ୍ଭେମାନେ ଏପରି ଭାବରେ ଅଭ୍ୟସ୍ତ ହୋଇଅଛୁଁ ଯେ ଏହିଗୁଡ଼ିକ କେଉଁଠାରୁ ଆସୁଅଛି ଆମ୍ଭେମାନେ ଭୁଲିଯାଇଛୁଁ । ଏହି ପ୍ରାଚୁର୍ଯ୍ୟ ସହିତ ଆହୁରି ମଧ୍ୟ ବହୁତ ଜିନିଷର ସଂଯୋଗ ଘଟିଅଛି ଯାହା ଏପରି ଅସାଧାରଣ ଯେ ସର୍ବଶକ୍ତିମାନ ଭଗବାନଙ୍କ ସତର୍କ ବିଧାନ ସମ୍ପର୍କରେ ସତତ ଅଜ୍ଞ ହୃଦୟରେ ମଧ୍ୟ ସହଜରେ ପ୍ରବେଶ କରିପାରେ । ଏହି ଗୃହଯୁଦ୍ଧ—ଯାହାର ବିସ୍ତୃତି ଏବଂ ପ୍ରଚଣ୍ଡତା ଅଭୂତପୂର୍ବ—ଏହା ବିଦେଶୀ ରାଷ୍ଟ୍ରଗୁଡ଼ିକର ଆକ୍ରମଣର ସ୍ପୃହା ଚରିତାର୍ଥ କରିବାରେ ପ୍ରଲୁବ୍ଧ କରିଅଛି; କିନ୍ତୁ ସେ ଅବସ୍ଥାରେ ମଧ୍ୟ ସକଳ ଦେଶ ସହିତ ଶାନ୍ତି ବଜାୟ ରହି ଆସିଅଛି, ଶୃଙ୍ଖଳା ଅକ୍ଷୁର୍ଣ୍ଣ ରହିଅଛି, ଆଇନ ସମ୍ମାନ ସହିତ ପ୍ରତିପାଳିତ ହୋଇ ଆସିଅଛି, ଏକମାତ୍ର ସାମରିକ ସଂଘର୍ଷଣର କ୍ଷେତ୍ର ବ୍ୟତୀତ ଏକତା ବଜାଇ ରହିଅଛି; ଏବଂ ଇୟୁନିୟନର ସୈନ୍ୟ ଓ ନୌବାହିନୀର ଅଗ୍ରଗତି ଫଳରେ ସେହି ରଣଭୂମି ମଧ୍ୟ କ୍ରମଶଃ ସଂକୁଚିତ ହୋଇ ଆସିଅଛି । ଶାନ୍ତିପୂର୍ଣ୍ଣ ଶିଳ୍ପରୁ ଜାତୀୟ ପ୍ରତିରକ୍ଷାର କ୍ଷେତ୍ରରେ ସମ୍ପଦ ଏବଂ ଶକ୍ତି ପ୍ରୟୋଜନାନୁଯାୟୀ ସ୍ଥାନାନ୍ତରିତ ହେଲେ ଲଙ୍ଗଳ, ତନ୍ତ୍ର ବା ଜାହାଜ ଅଚଳ ରହେ ନାହିଁ, କୁଠାର ଆମ୍ଭମାନଙ୍କର ବସତିର ସୀମା ବିସ୍ତୃତତର କରିଅଛି ଏବଂ ଲୌହ, କୋଇଲା ଏବଂ ମୂଲ୍ୟବାନ ଧାତୁଦ୍ରବ୍ୟ ଖଣିମାନଙ୍କରୁ ପୂର୍ବାପେକ୍ଷା ଆହୃତ ହୋଇ ଆସୁଅଛି । ଯୁଦ୍ଧକ୍ଷେତ୍ର ଅବରୋଧ ଫଳରେ ଏବଂ ସୈନ୍ୟବାହିନୀର କ୍ଷୟକ୍ଷତି ସତ୍ତ୍ୱେ ଜନସଂଖ୍ୟା ନିଶ୍ଚିତ ରୂପେ ବଢି ଚାଲିଅଛି ଏବଂ ବର୍ଦ୍ଧିତ ଶକ୍ତି ଓ ସାମର୍ଥ୍ୟର ଚେତନା ଦେଶ ସମ୍ମୁଖରେ ସମୃଦ୍ଧିର ସହିତ ସ୍ୱାଧୀନତା ବୃଦ୍ଧିର ଆଶା ଦେଖା ଦେଇଅଛି । ଏହି ସବୁ ମହତ୍ କାର୍ଯ୍ୟ କୌଣସି ମନୁଷ୍ୟ କର୍ତ୍ତୃକ ଉଦ୍ଭାବିତ ବା ବାସ୍ତବତାରେ ରୂପାୟିତ ହୁଏନାହିଁ । ଏହିଗୁଡ଼ିକ ଶ୍ରେଷ୍ଠ ପୁରୁଷ ଭଗବାନଙ୍କର ଦାନ; ସେ ଆମର ପାପ ପାଇଁ ଆମମାନଙ୍କ ପ୍ରତି କ୍ରୁଦ୍ଧ ହେଲେ ସୁଦ୍ଧା ଆମ୍ଭମାନଙ୍କ ପ୍ରତି କରୁଣା ପ୍ରଦର୍ଶନ କରିବାକୁ ବିସ୍ମୃତ ହୁଅନ୍ତି ନାହିଁ । ସମଗ୍ର ମାର୍କିଣ ଜାତି ଏକ ପ୍ରାଣରେ ଏବଂ ଏକ ବାକ୍ୟରେ ଭଗବାନଙ୍କର ଏହି ଦାନକୁ ସକୃତଜ୍ଞ ହୃଦୟରେ ଗମ୍ଭୀର ଏବଂ ଶ୍ରଦ୍ଧାର ସହିତ ସ୍ୱୀକାର କରିବା କର୍ତ୍ତବ୍ୟ । ଅତଏବ ଆଗାମୀ ନଭେମ୍ବର ଶେଷ ଗୁରୁବାରରେ ସ୍ୱର୍ଗସ୍ଥିତ ଆମ୍ଭମାନଙ୍କର ସହୃଦୟ ପରମ ପିତାଙ୍କୁ ଧନ୍ୟବାଦ ଜ୍ଞାପନ ପାଇଁ ମୁଁ ମାର୍କିଣ ଯୁକ୍ତରାଷ୍ଟ୍ରରେ ସର୍ବତ୍ର, ଏବଂ ବିଦେଶରେ ଏବଂ ସମୁଦ୍ର ବକ୍ଷରେ, ଆମ୍ଭମାନଙ୍କର ସ୍ୱଦେଶବାସୀମାନଙ୍କୁ ଆହ୍ୱାନ ଜଣାଉ ଅଛି । ଅତ୍ୟାଶ୍ଚର୍ଯ୍ୟ ପରିତ୍ରାଣ ଏବଂ ଆଶୀର୍ବାଦ ପାଇଁ ଏହି ପ୍ରାପ୍ୟ ପୂଜା ତାହାଙ୍କୁ ଦେବା ସଙ୍ଗେ ସଙ୍ଗେ ମୁଁ ମୋର ସ୍ୱଦେଶବାସୀମାନଙ୍କୁ ଅନୁରୋଧ କରୁଛି ଯେ ସେମାନେ ଆମ୍ଭମାନଙ୍କର ଜାତୀୟ ଉନ୍ମାର୍ଗଗାମିତା ପାଇଁ ସାନୁନୟ ସହିତ ଅନୁଶୋଚନା ଜଣାଇ, ଆମ୍ଭେମାନେ ଅନିବାର୍ଯ୍ୟ ରୂପେ ଯେଉଁ ଶୋକାବହ ଅନ୍ତର୍ଦ୍ୱନ୍ଦ୍ୱରେ ପ୍ରବୃତ୍ତ ରହିଅଛୁଁ ତାହା ମଧ୍ୟରୁ ଯେଉଁମାନେ ବିଧବା, ଅନାଥ ବା ଶୋକାଗ୍ରସ୍ତ ଏବଂ କ୍ଷତଗ୍ରସ୍ତ ହୋଇ ଅଛନ୍ତି ସେମାନଙ୍କ ପାଇଁ ଭଗବାନଙ୍କର ସଦୟ ଆଶୀର୍ବାଦର ପ୍ରାର୍ଥନା କରନ୍ତୁ; ଏବଂ ଜାତୀୟ କ୍ଷତ ଆରୋଗ୍ୟ ପାଇଁ ସ୍ୱର୍ଗୀୟ ବିଧାନ ଅନୁଯାୟୀ ଯଥାଶୀଘ୍ର ଶାନ୍ତି, ଐକ୍ୟ, ପ୍ରଶାନ୍ତି ଏବଂ ଇୟୁନିୟନର ପୁନଃ ପ୍ରତିଷ୍ଠା ପାଇଁ ସର୍ବଶକ୍ତିମାନ ଈଶ୍ୱରଙ୍କ ହସ୍ତକ୍ଷେପ ପାଇଁ ଆକୁଳ ଆବେଦନ କରନ୍ତୁ ।

ସାକ୍ଷ ସ୍ୱରୂପ ଏହା ମଧ୍ୟରେ ମୁ ମୋର ସ୍ୱାକ୍ଷର ସହିତ ଯୁକ୍ତରାଷ୍ଟ୍ରର ମୋହର ଅଙ୍କିତ କରି ଦେଇଅଛି ।

ଆମ ପ୍ରଭୁଙ୍କର (ଜନ୍ମର) ଏକ ସହସ୍ର ଆଠଶତ ତେଯ୍ଷ୍ଠିଅଶୀତମ, ଏବଂ ମାର୍କିଣ ଯୁକ୍ତରାଷ୍ଟ୍ରର ସ୍ୱାଧୀନତାର ଅଠାଅଶୀତମ ବର୍ଷରେ ଅକ୍ଟୋବର ୩ ତାରିଖରେ ଓ୍ୱାସିଂଟନ ନଗରୀରେ ଏହି ଘୋଷଣା କରାହେଲା ।

ଆବ୍ରାହାମ ଲିଙ୍କନ ।

## ଗେଟିସବର୍ଗ ବକ୍ତୃତା

୧୮୬୩ ମସିହା ନଭେମ୍ବର ୧୯ ତାରିଖରେ ଲିଙ୍କନ ପେନସିଲଭାନିଆ ଅନ୍ତର୍ଗତ ଗେଟିସବର୍ଗରେ ଗୋଟିଏ ସମାଧିକ୍ଷେତ୍ର ଉତ୍ସର୍ଗ କରିବାକୁ ଗଲେ । ସେ ଯୁଗର ବିଖ୍ୟାତ ବକ୍ତା ଏଡ୍‌ୱାର୍ଡ଼ ଏଭରେଟ ପ୍ରଧାନ ବକ୍ତା ଥିଲେ ; କିନ୍ତୁ ସଭାପତିଙ୍କୁ କେତେକ ବିଷୟ କହିବାକୁ ଅନୁରୋଧ କରାହେଲା । ଏହି ମନ୍ତବ୍ୟ ଗୁଡିକ ଇତିହାସରେ ଗେଟିସବର୍ଗ ବକ୍ତୃତା ହିସାବରେ ଖ୍ୟାତି ଅର୍ଜନ କରିଅଛି ।

ସତାଅଶୀ ବର୍ଷ ପୂର୍ବେ ଆମ୍ଭମାନଙ୍କର ପିତୃପୁରୁଷଗଣ ଏହି ମହାଦେଶରେ ଗୋଟିଏ ନୂତନ ଜାତିର ପ୍ରତିଷ୍ଠା କରିଥିଲେ । ସ୍ୱାଧୀନତାରେ ଏହାର ଉଦ୍ଭବ ଏବଂ ସବୁ ମନୁଷ୍ୟ ସମଭାବେ ସୃଷ୍ଟି ହୋଇଅଛନ୍ତି ଏହି ନୀତିର ପ୍ରତି ତାହା ଉତ୍ସର୍ଗୀକୃତ । ଆମ୍ଭେମାନେ ବର୍ତ୍ତମାନ ଗୋଟିଏ ମହାନ୍ ଗୃହଯୁଦ୍ଧରେ ରତ ରହି ପରୀକ୍ଷା କରୁଛନ୍ତି ଯେ ସେହି ଜାତି ବା ଅନୁରୂପଭାବେ କଳ୍ପିତ ଏବଂ ଉତ୍ସର୍ଗୀକୃତ କୌଣସି ଜାତି ଦୀର୍ଘକାଳ ପର୍ଯ୍ୟନ୍ତ ତିଷ୍ଠି ପାରିବ କି ନାହିଁ । ଆମ୍ଭେମାନେ ସେହି ଯୁଦ୍ଧର ଗୋଟିଏ ବିସ୍ତୀର୍ଣ୍ଣ ରଣକ୍ଷେତ୍ରରେ ମିଳିତ ହୋଇ ଅଛନ୍ତି । ସେହି ଜାତି ଯେଉଁଥିରେ ବଞ୍ଚି ରହି ପାରିବ ସେଥିପାଇଁ ଏହି ସ୍ଥାନରେ ଯେଉଁମାନେ ଜୀବନ ଦାନ କରିଛନ୍ତି ସେମାନଙ୍କର ଅନ୍ତିମ ବିଶ୍ରାମର ସ୍ଥାନ ହିସାବରେ ଆମ୍ଭେମାନେ ସେହି କ୍ଷେତ୍ରର ଏକ ଅଂଶରେ ଉତ୍ସର୍ଗ କରିବାକୁ ଆସିଅଛନ୍ତି । ଏହା କରିବା ବିଶେଷ ସଙ୍ଗତ ଏବଂ ସମୁଚିତ ।

କିନ୍ତୁ ଏକ ଅର୍ଥରେ ଆମ୍ଭେମାନେ ଏହି ଜମିକୁ ଉତ୍ସର୍ଗ କରିପାରିବା ନାହିଁ—ପବିତ୍ର କରି ପାରିବାନାହିଁ । ଜୀବିତ କିମ୍ବା ମୃତ ଯେଉଁ ସାହାସୀ ବ୍ୟକ୍ତିମାନେ ଏହି ସ୍ଥାନରେ ଯୁଦ୍ଧ କରିଥିଲେ ସେମାନେ ଏହାକୁ ଯେଉଁ ପବିତ୍ରତା ଦାନ କରିଛନ୍ତି ତାହା ବୃଦ୍ଧି କିମ୍ବା ହ୍ରାସ କରିବା ଆମ୍ଭମାନଙ୍କର ସାଧାରଣ ଶକ୍ତିର ସାଧ୍ୟାତୀତ । ଏହି ସ୍ଥାନରେ ଆମ୍ଭେମାନେ ଯାହା କହୁଛନ୍ତି ପୃଥିବୀର ଜନସାଧାରଣ ତାହାପ୍ରତି ବିଶେଷ ମନଯୋଗ ଦେବେ-ନାହିଁ ବା ଅଧିକ କାଳ ତାହା ସ୍ମରଣରେ ରଖିବେ ନାହିଁ; କିନ୍ତୁ ଏହି ସ୍ଥାନରେ ସେମାନେ ଯାହା କରିଛନ୍ତି

ବିଶ୍ୱବାସୀ ତାହାଙ୍କୁ କେତେବେଳେହେଲେ ଭୁଲିବେ ନାହିଁ । ଏହି ସ୍ଥାନରେ ଯୁଦ୍ଧକରି ଯେଉଁ ଉଦ୍ଦେଶ୍ୟକୁ ସେମାନେ ମହତ ବୋଲି ଭାବି ଏତେଦୂର ପର୍ଯ୍ୟନ୍ତ ଅଗ୍ରସର କରି ଆଣିଛନ୍ତି, ଆମ୍ଭେ ଯେଉଁମାନେ ଜୀବିତ ରହି ଅଛନ୍ତି ଆମ୍ଭମାନଙ୍କର କର୍ତ୍ତବ୍ୟ—ସେହି ଆବଦ୍ଧ କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ନିଜକୁ ଉତ୍ସର୍ଗ କରିବା । ଆମ୍ଭମାନଙ୍କ ସମ୍ମୁଖରେ ଯେଉଁ ମହାନ୍ କର୍ତ୍ତବ୍ୟ ରହିଅଛି ସେହି କର୍ତ୍ତବ୍ୟ ପ୍ରତି ଆମ୍ଭମାନଙ୍କର ନିଜର ଶରୀରକୁ ଉତ୍ସର୍ଗ କରିବା ଉଚିତ—ଯେଉଁ ଉଦ୍ଦେଶ୍ୟ ପାଇଁ ସେମାନେ ସେମାନଙ୍କ ଆନୁଗତ୍ୟର ଶେଷ କଣାଟି ପର୍ଯ୍ୟନ୍ତ ଦାନ କରିଛନ୍ତି ମୃତ ମହାତ୍ମାମାନଙ୍କର ଦୃଷ୍ଟାନ୍ତରୁ ଆମ୍ଭେମାନେ ଯେପରି ସେହି ଉଦ୍ଦେଶ୍ୟ ପ୍ରତି ଆନୁଗତ୍ୟ ବୃଦ୍ଧି କରିବାକୁ ଉଦ୍‌ବୁଦ୍ଧ ହୁଅନ୍ତି, ଆମ୍ଭେମାନେ ଏଠାରେ ସଂକଳ୍ପ ଗ୍ରହଣ କରିବା ଯେପରି ସେମାନଙ୍କର ମୃତ୍ୟୁ ବିଫଳ ନହୁଏ—ଯେପରି ଭଗବାନଙ୍କର ଅଧୀନରେ ଏହି ଦେଶର ପୁନର୍ଜନ୍ମ ହୁଏ—ଯେପରି ପୃଥିବୀରୁ ଜନଗଣ ପାଇଁ, ଜନଗଣ ଦ୍ୱାରା ଗଠିତ, ଜନଗଣର ସରକାର ଧ୍ୱଂସ ନହୁଏ ।

## ବିଶ୍ୱପ୍ରେମୀ ଲିଙ୍କନ

ସଭାପତି ପଦ ଦାୟିତ୍ୱର ଗୁରୁଭାର ବହନ କରିବା ସଙ୍ଗେ ସଙ୍ଗେ ଲିଙ୍କନ ସର୍ବଦା ଅଜଣା, ନରନାରୀ ଯେଉଁମାନେ ତାହାଙ୍କର ମାନବତା ବୋଧର ନିକଟରେ ଆବେଦନ କରନ୍ତି, ସେମାନଙ୍କ ପକ୍ଷରୁ ହସ୍ତକ୍ଷେପ କରନ୍ତି ।

ଏକ୍ସିକିଉଟିଭ୍ ମ୍ୟାନସନ,
ୱାସିଂଟନ ମାର୍ଚ୍ଚ ୧, ୧୮୬୪

ମାନନୀୟ ସମରସଚିବ—
ପ୍ରିୟ ମହାଶୟ,

ଗ୍ରେୟାର୍ଡ ନାମ୍ନୀ ଜନୈକା ଦରିଦ୍ର ବିଧବାର ଗୋଟିଏ ପୁଅ ସେନାବାହିନୀରେ କାର୍ଯ୍ୟକରେ ; କୌଣସି ଅପରାଧ ପାଇଁ ଶାସ୍ତି ହିସାବରେ ତାହାକୁ ଦୀର୍ଘକାଳ ପର୍ଯ୍ୟନ୍ତ ବିନା ବେତନରେ, କିମ୍ବା ଅତି ସାମାନ୍ୟ ବେତନରେ କାର୍ଯ୍ୟ ଦିଆ ଯାଇଥିଲା । ବେତନ ନ ଦେଇ ଏପରି ଶାସ୍ତିବିଧାନକୁ ମୁଁ ପସନ୍ଦ କରେନା—ଦରିଦ୍ର ପରିବାର ଗୁଡ଼ିକ ଏଥିରେ ବହୁତ କ୍ଲେଶ ପାଆନ୍ତି । ସେ କେତେକ ମାସ ଏହିପରି କାର୍ଯ୍ୟ କରିବା ପରେ ତାହାର ମାତାର ଅଶ୍ରୁକାତର ଆବେଦନରେ ମୁଁ ନିର୍ଦ୍ଦେଶ ଦିଏ ଯେପରି ତାହାକୁ ଚାକିରୀର ପୂର୍ବ ସର୍ତ୍ତ ଅନୁଯାୟୀ ନୂତନ ଭାବରେ କାର୍ଯ୍ୟରେ ନିଯୋଗ କରାହୁଏ । ତାହାର ମାତା ଏହିକ୍ଷଣି ଆସି କହେ ଯେ ଏହି ନିର୍ଦ୍ଦେଶ କାର୍ଯ୍ୟକାରୀ କରା ଯାଉନାହିଁ । ଅନୁଗ୍ରହ କରି ଏହାକୁ କାର୍ଯ୍ୟକାରୀ କରାନ୍ତୁ ।

ଭବଦୀୟ—
ଏ, ଲିଙ୍କନ

## ସ୍ୱାଧୀନତା ସମ୍ପର୍କରେ ଅଭିମତ

୧୮୬୪ ମସିହା ଏପ୍ରିଲ ମାସରେ ବାଲ୍‌ଟିମୋରରେ ସ୍ୱାସ୍ଥ୍ୟ ସଂବନ୍ଧୀୟ ଏକ ମେଳାରେ ପ୍ରଦତ୍ତ ବକ୍ତୃତାରେ ହୃଦୟଗ୍ରାହୀ ରୂପକ **(Metaphor)**ର ପ୍ରୟୋଗରେ ଲିଙ୍କନଙ୍କର ଦକ୍ଷତାର ପରିଚୟ ମିଳେ ।

ପୃଥିବୀରେ ବର୍ତ୍ତମାନ ପର୍ଯ୍ୟନ୍ତ ସ୍ୱାଧୀନତାର କୌଣସି ଯଥାର୍ଥ ସଂଜ୍ଞା ନିରୂପିତ ହୋଇନାହିଁ । ଆମେରିକାର ଜନସାଧାରଣ ନିକଟରେ ଏହିପରି ଗୋଟିଏ ସଂଜ୍ଞାର ବିଶେଷ ପ୍ରୟୋଜନୀୟତା ଦେଖା ଦେଇଅଛି । ଆମ୍ଭେମାନେ ସମସ୍ତେ ସ୍ୱାଧୀନତା ବୋଲି ଘୋଷଣା କରୁ ; କିନ୍ତୁ ଗୋଟିଏ ଶବ୍ଦ ଆମ୍ଭେମାନେ ଭିନ୍ନ ଭିନ୍ନ ଅର୍ଥରେ ପ୍ରୟୋଗ କରନ୍ତି । କାହା ନିକଟରେ ସ୍ୱାଧୀନତା ଶବ୍ଦଟିର ଅର୍ଥ ହେଉଛି ତାହାର ଇଚ୍ଛାନୁଯାୟୀ ଚଳିବାର ଅଧିକାର ଏବଂ ଇଚ୍ଛାନୁଯାୟୀ ନିଜର ଶ୍ରମାର୍ଜିତ ଫଳ ଭୋଗ କରିବାର ଅଧିକାର; ଏବଂ ଅନ୍ୟ କାହା ମତରେ ଏହି ଶବ୍ଦଟିର ଅର୍ଥ ହେଉଛି ନିଜନିଜର ଖୁସି ମୁତାବକ ଅପରର ସହିତ ବ୍ୟବହାର କରିବା ଏବଂ ଅପରର ଶ୍ରମରେ ଫଳ ଭୋଗ କରିବାର ଅଧିକାର । ଏହି ସ୍ଥାନରେ ଦୁଇଟି— କେବଳ ସ୍ୱତନ୍ତ୍ର ତାହା ନୁହେଁ, ସମ୍ପୂର୍ଣ୍ଣ ପରସ୍ପର ବିରୋଧୀ—ଜିନିଷ, ଗୋଟିଏ—ସ୍ୱାଧୀନତା ନାମରେ ଅଭିହିତ ହୋଇଅଛି । ଏବଂ ଉଭୟ ପକ୍ଷହିଁ ଜିନିଷ ଦୁଇଟିକୁ ବିଭିନ୍ନ ଏବଂ ପରସ୍ପର ବିରୋଧୀ ନାମରେ— ସ୍ୱାଧୀନତା ଏବଂ ଅତ୍ୟାଚାର ନାମରେ ଅଭିହିତ କରିଛନ୍ତି । ଗଧିଆ ମୁଖରୁ ରକ୍ଷା କରିବା ପାଇଁ ମେଷ ଶାବକ ମେଷ ପାଳକକୁ ମୁକ୍ତିଦାତା ହିସାବରେ କୃତଜ୍ଞତା ଜଣାଏ ; ଅନ୍ୟ ପକ୍ଷରେ ଏହି ଏକ କାର୍ଯ୍ୟପାଇଁ ଗଧିଆ ସ୍ୱାଧୀନତା ଧ୍ୱଂସକାରୀ ବୋଲି ମେଷପାଳକକୁ ତିରସ୍କାର କରେ—ବିଶେଷତଃ ମେଷଟି କଳା ଥିଲା ବୋଲି । ସ୍ପଷ୍ଟତଃ ଦେଖା ଯାଉଛି ସ୍ୱାଧୀନତା ଶବ୍ଦଟିର ସଂଜ୍ଞା ସମ୍ପର୍କରେ ମେଷ ଓ ଗଧିଆର ଏକମତ ନୁହନ୍ତି ; ମାନବଜାତି ମଧ୍ୟରେ ଠିକ୍ ଏକ ଧରଣର ପାର୍ଥକ୍ୟ ରହିଅଛି—ଆମ୍ଭେ ଯେଉଁମାନେ ଉତ୍ତରରେ ରହନ୍ତି ଏବଂ ସ୍ୱାଧୀନତା ପ୍ରିୟତାର ଦାବି କରନ୍ତି ସେମାନଙ୍କ ଭିତରେ ମଧ୍ୟ ।

ଏହି କାରଣରୁ ଆମ୍ଭେମାନେ ଆଜି ଦେଖୁଛନ୍ତି ଯେ, ଯେଉଁ ଉପାୟରେ ପ୍ରତିଦିନ ହଜାର ହଜାର ଲୋକ ବନ୍ଧନମୁକ୍ତ ହେଉଛନ୍ତି କେହି କେହି ତାହାକୁ ସ୍ୱାଧୀନତାର ଅଗ୍ରଗତି ରୂପେ ଅଭିନନ୍ଦିତ କରୁଛନ୍ତି ; ଅନ୍ୟ ଏକ ତାହାକୁ ସ୍ୱାଧୀନତାର ମୃତ୍ୟୁ ବୋଲି ବିଳାପ କରୁଛନ୍ତି ।

## ଅବସରପ୍ରାପ୍ତ ସୈନ୍ୟମାନଙ୍କ ପ୍ରତି

୧୮୬୪ ମସିହାର ବିଶୃଙ୍ଖଳା ସମୟରେ ଯୁଦ୍ଧର ଗତି ଅବଶେଷରେ ଇଉନିୟନର ଅନୁକୂଳରେ ଆସିଲା ; ଲିଙ୍କନ ପୁନଶ୍ଚ ସଭାପତି ପଦ ପାଇଁ ମନୋନୟନ ଲାଭ କଲେ । ଏହି ବର୍ଷର ଅଗଷ୍ଟ ମାସରେ ସେ ଅବସର ଗ୍ରହଣକାରୀ ସୈନ୍ୟମାନଙ୍କ ସମ୍ମୁଖରେ ଗୋଟିଏ କ୍ଷୁଦ୍ର ବକ୍ତୃତା ଦେଲେ ।

ଆପଣମାନେ ପରିବାର ଓ ପ୍ରିୟଜନମାନଙ୍କ ନିକଟକୁ ଫେରି ଯାଉଛନ୍ତି । ଆମ୍ଭେମାନେ ବର୍ତ୍ତମାନ ଯେଉଁ ମହା ସଂଗ୍ରାମରେ ନିରତ ଅଛନ୍ତି ସେଥିରେ ଆପଣମାନେ ଯେଉଁ ଭୂମିକା ଗ୍ରହଣ କରିଅଛନ୍ତି ସେଥି-ପାଇଁ ମୁଁ ମୋ ନିଜ ପକ୍ଷରୁ ଏବଂ ଦେଶ ପକ୍ଷରୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଯେତେବେଳେ ମୁଁ ସୈନ୍ୟଗଣ ନିକଟରେ କୌଣସି କଥା କହିବାର ସୁଯୋଗ ପାଏ, ତେତେବେଳେ ସର୍ବଦା କେତୋଟି ସଂକ୍ଷିପ୍ତ କଥାରେ ଏହି ପ୍ରତିଦ୍ୱନ୍ଦ୍ୱୀତାର ଜୟଲାଭର ଗୁରୁତ୍ୱ ସମ୍ପର୍କରେ ସେମାନଙ୍କ ମନରେ ବିଶେଷ ଭାବରେ ରେଖାପାତ କରିବାକୁ ଚେଷ୍ଟା କରେ । ଏହି ମହାନ୍ ଏବଂ ସ୍ୱାଧୀନ ସରକାର ଯାହା ଆମ୍ଭେମାନେ ସାରା ଜୀବନ ଧରି ଭୋଗକରି ଆସୁଅଛନ୍ତି ତାହାକୁ କେବଳମାତ୍ର ବର୍ତ୍ତମାନ ପାଇଁ ନୁହେଁ ଅନାଗତ ସବୁଦିନ ପାଇଁ ଯେପରି ଆମ୍ଭର ବଂଶଧରମାନଙ୍କ ପାଇଁ ସ୍ଥାୟୀ କରି ପାରିବା । ମୁଁ ଆପଣଙ୍କୁ ଏହି କଥାଟି ସ୍ମରଣ ରଖିବାକୁ ମିନତି କରୁଅଛି—କେବଳମାତ୍ର ମୋ ପାଇଁ ନୁହେଁ, ଆପଣମାନଙ୍କ ନିଜପାଇଁ ମଧ୍ୟ । ଦୈବାତ୍ ସାମୟିକ ଭାବେ ମୁଁ ହ୍ୱାଇଟ ହାଉସ ଅଧିକାର କରି ରଖିଅଛି । ମୋର ପିତାର ସନ୍ତାନମାନଙ୍କ ପରି ଆପଣମାନଙ୍କ ସନ୍ତାନମାନେ ମଧ୍ୟ ଏହି ସ୍ଥାନକୁ ଆସିବାକୁ ଆଶା କରି ପାରନ୍ତି ମୁଁ ହିଁ ତାହାର ଜୀବନ୍ତ ସାକ୍ଷୀ । ଏହି ସ୍ୱାଧୀନ ସରକାର—ଯାହା ଆମ୍ଭେମାନେ ଭୋଗ କରୁଛନ୍ତି—ଏହାର ମାଧ୍ୟମରେ ଆପଣମାନଙ୍କର ଅଧ୍ୟବସାୟ, ଉଦ୍ୟମ ଏବଂ ବୁଦ୍ଧିମତା ପ୍ରୟୋଗର ଅବତାରିତ କ୍ଷେତ୍ର ଏବଂ ଉପଯୁକ୍ତ ସୁଯୋଗ ରଖିବା ଉଚିତ; ସୁଯୋଗ ରଖିବା ଉଚିତ ଏହି କାରଣରୁ ଯେ ଜୀବନର ଗତି ପଥରେ ଆପଣମାନଙ୍କର ବାଞ୍ଛନୀୟ ମାନବିକ ଆଶା ଓ ଆକାଂକ୍ଷା ପୂର୍ଣ୍ଣ ହେବାପାଇଁ । ଯେଉଁଥିରେ ଆମ୍ଭେମାନେ ଆମ୍ଭମାନଙ୍କର ଜନ୍ମସତ୍ୱ ନ ହରାଉ ସେଥିପାଇଁ ଏହି ସଂଗ୍ରାମ ଚଳାଇ ନେବାକୁ ହେବ—କେବଳମାତ୍ର ଏକବର୍ଷ ପାଇଁ ନୁହେଁ, ଦୁଇ ବା ତିନି ବର୍ଷର ପାଇଁ । ଜାତିର ଏହି ଅମୂଲ୍ୟରତ୍ନ ସୁରକ୍ଷିତ କରିବା ପାଇଁ ଅନୁଚିତ କାର୍ଯ୍ୟ ନୁହେଁ ।

## ସ୍ୱର୍ଗୀୟ ନିର୍ଦ୍ଦେଶ ସମ୍ପର୍କରେ

୧୮୬୪ ମସିହା ସେପ୍ଟେମ୍ବର ମାସରେ ଜଣେ ବନ୍ଧୁଙ୍କୁ ଲିଖିତ ପତ୍ରରେ ଯୁଦ୍ଧର ଅଗ୍ନି ପରୀକ୍ଷା ମଧ୍ୟରେ କେଉଁ ବିଶ୍ୱାସ ତାହାଙ୍କୁ ଅନୁପ୍ରେରଣା ଯୋଗାଇଥିଲା ତାହା ପ୍ରକାଶ କଲେ ।

ଏକ୍ସିକଉଟିଭ ମ୍ୟାନସନ,
ଓ୍ୱାସିଂଟନ, ସେପ୍ଟେମ୍ବର ୪, ୧୮୬୪

ଏଲିଜା ପି, ଗାର୍ନି
ପରମ ସହୃଦୟେଷୁ,

ଦୁଇ ବର୍ଷର ପୂର୍ବେ ଦିନେ ଶନିବାର ସକାଳେ ଯେତେବେଳେ ଆପଣ ସ୍ୱୟଂ କେତେଜଣ ବନ୍ଧୁଙ୍କୁ ନେଇ ମୋ ସହିତ ସାକ୍ଷାତ କରିବାକୁ ଆସିଲେ ସେହି ସ୍ମରଣୀୟ ଘଟଣା ମୁଁ ଭୁଲିନାହିଁ—ସମ୍ଭବତଃ କେତେବେଳେହେଲେ ଭୁଲିବି ନାହିଁ । ଏକବର୍ଷର ପରେ ଆପଣ ଯେଉଁ ଚିଠି ଖଣ୍ଡିକ ଲେଖିଥିଲେ ତାହା ମଧ୍ୟ ଭୁଲିନାହିଁ । ସବୁ କ୍ଷେତ୍ରରେ ଆପଣ ଭଗବାନଙ୍କ ଉପରେ ମୋର ଆସ୍ଥା ବୃଦ୍ଧି କରିବାକୁ ପ୍ରୟାସୀ

ହେଉଛନ୍ତି । ନିରନ୍ତର ପ୍ରାର୍ଥନା ଏବଂ ସାନ୍ତ୍ୱନା ବାଣୀ ପାଇଁ ଏହି ଦେଶର ସବୁ ଖ୍ରୀଷ୍ଟିୟାନ ଜନସାଧାରଣଙ୍କ ନିକଟରେ ମୁଁ ବିଶେଷଭାବେ କୃତଜ୍ଞ—ଆପଣଙ୍କ ନିକଟରେ ଯେପରି ଅନ୍ୟ କାହାରି ନିକଟରେ ସେପରି ନୁହେଁ । ସର୍ବଶକ୍ତିମାନଙ୍କର ଅଭିପ୍ରାୟ ସମୁହ ନିଷ୍କଳଙ୍କ, ଏବଂ ତାହା ପ୍ରାଧାନ୍ୟ ଲାଭ କରିବ, ଯଦି ଓ ଭ୍ରାନ୍ତ, ନଶ୍ୱର ମାନବ ଆମ ସମ୍ମୁଖରେ ତାହା ଅନୁଧାବନ କରିପାରେ ନାହିଁ । ବହୁ ପୂର୍ବେ ଆମ୍ଭେମାନେ ଆଶା କରିଥିଲେ ଏହି ଯୁଦ୍ଧର ସୁଖକର ପରିଣତି ଘଟିବ ବୋଲି, କିନ୍ତୁ ଭଗବାନ ସର୍ବାପେକ୍ଷା ଭଲ ବୁଝନ୍ତି ଏବଂ ସେ ଅନ୍ୟ ବିଧାନ କରି ଅଛନ୍ତି । ତଥାପି ଆମ୍ଭେମାନେ ତାଙ୍କର ବିଚକ୍ଷଣତା ଏବଂ ଆମ୍ଭମାନଙ୍କର ଭ୍ରାନ୍ତି ସ୍ୱୀକାର କରିବୁ । ଏହା ମଧ୍ୟରେ ସେ ଆମ୍ଭମାନଙ୍କୁ ଯେଉଁ ସର୍ବଶ୍ରେଷ୍ଠ ଆଲୋକ ପ୍ରଦାନ କରିଛନ୍ତି ତଦନୁଯାୟୀ କାର୍ଯ୍ୟ କରିଯିବୁ । ଏହି ବିଶ୍ୱାସରେ ଏହି ଭାବରେ କାର୍ଯ୍ୟ କଲେ ତାଙ୍କର କରୁଣା ଲାଭ କରିବାର ସୁଯୋଗ ହେବ । ଏହା ସୁନିଶ୍ଚିତ ଯେ ଏହି ମହାପ୍ରଳୟ—ଯାହାର ସୃଷ୍ଟି ଅଥବା ଲୟ ମାନବର ସମ୍ପୂର୍ଣ୍ଣ ସାଧ୍ୟାତୀତ—ମଧ୍ୟରୁ କୌଣସି ମହାକଲ୍ୟାଣ ସାଧନ ତାଙ୍କର ଅଭିପ୍ରାୟ

ଆପଣମାନଙ୍କର ଦେଶବାସୀଗଣ—ବନ୍ଧୁମାନେ—ବିଶେଷ କଠିନ ପରୀକ୍ଷାର ସମ୍ମୁଖୀନ ହେଉଅଛନ୍ତି ଏବଂ ତାହା ମଧ୍ୟ ଦେଇ ଅତିକ୍ରମ କରୁଅଛନ୍ତି । ନୀତି ଏବଂ ବିଶ୍ୱାସ ଅନୁଯାୟୀ ସେମାନେ ଯୁଦ୍ଧ ଏବଂ ଉତ୍ପୀଡ଼ନ ଉଭୟର ବିରୋଧୀ—କିନ୍ତୁ କାର୍ଯ୍ୟତଃ ଉତ୍ପୀଡ଼ନ ଦୂର କରିବାକୁ ହେଲେ ଯୁଦ୍ଧ ଭିନ୍ନ ଅନ୍ୟଗତି ନାହିଁ । ଏହି କଠିନ ସଙ୍କଟରେ—କେହି ଗୋଟିଏ ଶିଙ୍ଗ ଧରିଅଛି, କେହି ବା ଅନ୍ୟଟି । ମୋତେ ବିବେକର ନିର୍ବନ୍ଧ ଦେଖାଇ ଯେଉଁମାନେ ଅନୁରୋଧ ଜଣାଉଛନ୍ତି, ସେମାନଙ୍କ ପାଇଁ ନ୍ୟାୟର ନିକଟରେ ମୋର ଶପଥର ଭିତ୍ତିରେ ଯଥା ସାଧ୍ୟ କରୁଅଛି, ଏବଂ କରୁଥିବି । ଆପଣ ଯେ ଏହା ବିଶ୍ୱାସ କରନ୍ତି ସେଥିରେ ମୁଁ ସନ୍ଦେହ କରେ ନାହିଁ । ଏହି ବିଶ୍ୱାସ ନେଇ ଆମ ଦେଶପାଇଁ ଏବଂ ଆମ ନିଜପାଇଁ ସ୍ୱର୍ଗସ୍ଥିତ ଆମର ପରମପିତାଙ୍କ ନିକଟରେ ଆପଣଙ୍କର ଅକପଟ ପ୍ରାର୍ଥନା ମୁଁ ଏହିକ୍ଷଣି ମଧ୍ୟ ପାଇ ପାରିବି ।

ଆପଣଙ୍କର ଏକାନ୍ତ ବନ୍ଧୁ
ଏ, ଲିଙ୍କନ

## ଅବାଧ ନିର୍ବାଚନ

୧୮୬୪ ମସିହା ନଭେମ୍ବର ମାସରେ ଏକ ସଂବର୍ଦ୍ଧନାର ଉତ୍ତରଦାନ ପ୍ରସଙ୍ଗରେ ଲିଙ୍କନ ତାଙ୍କର ପୁନ ନିର୍ବାଚନ ସମ୍ପର୍କରେ ତାଙ୍କ ନିଜର ଅଭିମତ ବ୍ୟକ୍ତ କରି କହିଲେ :

ବହୁକାଳ ପର୍ଯ୍ୟନ୍ତ ଏହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଟି ରହି ଆସିଅଛି ଯେ, ଜନସାଧାରଣଙ୍କ ସ୍ୱାଧୀନତା କ୍ଷୁଣ୍ଣ ନକରି କୌଣସି ସରକାର ଏପରି ବଳ ସଞ୍ଚୟ କରିପାରେ କି ନା ଯେଉଁଥିରେ ବିପଦ ସମୟରେ ଏହା ନିଜର ଅସ୍ତିତ୍ୱ ରକ୍ଷା କରିପାରେ ।

ବର୍ତ୍ତମାନ ବିଦ୍ରୋହ ଏହି ବିଷୟ ନେଇ ଆମର ସାଧାରଣତନ୍ତ୍ରକୁ ଗୋଟିଏ କଠିନ ପରୀକ୍ଷା ମଧ୍ୟରେ ପକାଇଛି । ବିଦ୍ରୋହ ସମୟରେ ଯଥାନିୟମରେ ସଭାପତି ନିର୍ବାଚନ ଅନୁଷ୍ଠିତ ହେବାରୁ ଏହି ଚାପ ବିଶେଷଭାବେ ବୃଦ୍ଧି ପାଉଅଛି । ଐକ୍ୟବଦ୍ଧ ରହିବା ସତ୍ତ୍ୱେ ବିଦ୍ରୋହ ଫଳରେ ଯଦି ଅନୁରକ୍ତ ଜନ-

ସାଧାରଣଙ୍କ ଉପରେ ସର୍ବାପେକ୍ଷ ବେଶି ଚାପ ପଡ଼ିଥାଏ, ତେବେ ରାଜନୈତିକ ଅନ୍ତର୍ଦ୍ୱନ୍ଦରେ ବିଭକ୍ତ ହେବା ଫଳରେ ଆଂଶିକ ପକ୍ଷପାତ ଯୋଗୁଁ କି ସେମାନଙ୍କର ପତନ ଅବଶ୍ୟମ୍ଭାବୀ ନୁହେଁ ?

କିନ୍ତୁ ନିର୍ବାଚନର ପ୍ରୟୋଜନ ଥିଲା ।

ନିର୍ବାଚନ ବ୍ୟତୀତ ସ୍ୱାଧୀନ ସରକାର ଗଠନ ସମ୍ଭବ ନୁହେ, ବିଦ୍ରୋହ ଫଳରେ ଆମ୍ଭେମାନେ ଯଦି ଜାତୀୟ ନିର୍ବାଚନ ସ୍ଥଗିତ ରଖିବାକୁ ବାଧ୍ୟ ହୋଇଥାନ୍ତୁ ତାହାହେଲେ ଏଥିରେ ବିଦ୍ରୋହର ସାଫଲ୍ୟ ଏବଂ ଆମ୍ଭମାନଙ୍କର ଧ୍ୱଂସ ସୁନିଶ୍ଚିତ ହୋଇଥାନ୍ତା । ନିର୍ବାଚନର ବିରୋଧିତା ବର୍ତ୍ତମାନ ଘଟଣାବଳୀ ଉପରେ ମାନବ ଚରିତ୍ରର ପ୍ରୟୋଗ ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି କ୍ଷେତ୍ରରେ ଯାହା ଘଟିଅଛି; ଅନୁରୂପ ସକଳ କ୍ଷେତ୍ରରେ ଏହା ଘଟିବା ଉଚିତ । ମାନବ ଚରିତ୍ରର ପରିବର୍ତ୍ତନ ଘଟିବ ନାହିଁ । ଭବିଷ୍ୟତରେ କୌଣସି ବିରାଟ ପରୀକ୍ଷା ସମୟ ଉପସ୍ଥିତ ହେଲେ, ତେତେବେଳେ ଯେଉଁମାନେ ଏହାର ସମ୍ମୁଖୀନ ହେବେ, ସେମାନେ ବର୍ତ୍ତମାନ ଭଳି ଦୁର୍ବଳ, ସବଳ, ନିର୍ବୋଧ, ବୁଦ୍ଧିମାନ, ମହାନ ବା ଦୃଷ୍ଟହେବେ । ଅତଏବ ଆସନ୍ତୁ, ଆମ୍ଭେମାନେ ଏହି ଘଟଣାଗୁଡ଼ିକୁ ଅନୁଧାବନ କରି—ଜ୍ଞାନର ଆଧାର ଦର୍ଶନକୁ ଯେଉଁଭାବରେ ଅନୁଧାବନ କରନ୍ତି ସେହିଭାବରେ, ପ୍ରତିଶୋଧ ଗ୍ରହଣର ଉପଯୋଗୀ ଅନ୍ୟାୟ ହିସାବରେ ନୁହେଁ ।

କିନ୍ତୁ ନିର୍ବାଚନ—ଆକସ୍ମିକ ଏବଂ ଅବାଞ୍ଛନୀୟ ବିବାଦ ସତ୍ତ୍ୱେ—ଉପକାର କରିଅଛି । ଏଥିରେ ପ୍ରମାଣିତ ହୋଇଅଛି ଯେ ବିରାଟ ଗୃହଯୁଦ୍ଧ ମଧ୍ୟରେ ସୁଦ୍ଧା ଜନସାଧାରଣର ସରକାର ଜାତୀୟ ନିର୍ବାଚନ ସମ୍ପାଦିତ କରିପାରେ । ଏତେଦିନ ପର୍ଯ୍ୟନ୍ତ ଏହା ସମ୍ଭବ ବୋଲି ପୃଥିବୀ ମନେ କରି ନଥିଲା । ଏଥିରେ ଆହୁରି ମଧ୍ୟ ପ୍ରମାଣିତ ହୋଇଅଛି ଯେ ଆମ୍ଭେମାନେ କେତେ ସବଳ ଏବଂ ଶକ୍ତିଶାଳୀ । ଏଥିରେ ପ୍ରମାଣିତ ହୋଇଅଛି ଯେ ଗୋଟିଏ ଦଳର ପାର୍ଥୀମାନଙ୍କ ମଧ୍ୟରେ ସେ ଅଧିକାଂଶ ଜନସାଧାରଣଙ୍କର ଭୋଟ ପାଇ ପାରିବ, ଯିଏ ଇଉନିୟନର ପ୍ରତି ସର୍ବାପେକ୍ଷା ଅନୁରକ୍ତ ଏବଂ ଦେଶ ଦ୍ରୋହିତାର ସର୍ବାପେକ୍ଷା ବିରୋଧୀ । ଏତେଦିନ ପର୍ଯ୍ୟନ୍ତ ଯେତେଦୂର ଜଣା ଯାଇଛି ସେଥିରେ ଆହୁରି ମଧ୍ୟ ଅପ୍ରମାଣିତ ହୋଇଅଛି ଯେ ଯୁଦ୍ଧ ଆରମ୍ଭ ହେବା ସମୟରେ ଆମ୍ଭମାନଙ୍କ ଭଳି ଲୋକଥିଲେ, ବର୍ତ୍ତମାନ ତା ଅପେକ୍ଷା ଅନେକ ଲୋକ ଆମ୍ଭମାନଙ୍କର ସହଗାମୀ । ସ୍ୱସ୍ଥାନେ ସ୍ୱର୍ଣ୍ଣ ସୁନ୍ଦର; କିନ୍ତୁ ଜୀବନ୍ତ, ସାହାସୀ ଏବଂ ଦେଶପ୍ରେମୀ ମନୁଷ୍ୟ ସ୍ୱର୍ଣ୍ଣ ଅପେକ୍ଷା ଶ୍ରେଷ୍ଠତର ।

ବର୍ତ୍ତମାନ ବିଦ୍ରୋହ ଚାଲିଛି, ନିର୍ବାଚନ ସମାଧାନ ପରେ ସମସ୍ତେ କି ପୁନରାୟ ସାଧାରଣ ସ୍ୱାର୍ଥରେ ଆମ ସମସ୍ତଙ୍କ ଦେଶକୁ ରକ୍ଷା କରିବା ପାଇଁ ସାଧାରଣ ପ୍ରଚେଷ୍ଟାରେ ପୁନର୍ମିଳିତ ହୋଇ ପାରିବେ ନାହିଁ ? ମୋ ପକ୍ଷରୁ ଏହି ପଥରେ ଅନ୍ତରାୟ ସୃଷ୍ଟି ନ କରିବାର ପ୍ରୟାସ ପାଇ ଅଛି ଏବଂ ଭବିଷ୍ୟତରେ ସେହି ଚେଷ୍ଟା କରିବି । ଯେତେଦିନ ପର୍ଯ୍ୟନ୍ତ ମୁଁ ଏହି ସ୍ଥାନରେ ରହିଅଛି କେତେବେଳେହେଲେ ଇଚ୍ଛାକୃତ ଭାବରେ କାହାର ବକ୍ଷରେ କଣ୍ଟକ ରୋପଣ କରିନାହିଁ ।

ପୁନଃ ନିର୍ବାଚନର ମହାସମ୍ମାନ ସମ୍ପର୍କରେ ମୁଁ ଗଭୀରଭାବରେ ସଚେତନ; ଦେଶବାସୀଙ୍କ ସମସ୍ତଙ୍କ ସ୍ୱାର୍ଥର ଯଥାର୍ଥ ଉଦ୍ଦେଶ୍ୟ ଦିଗରେ ପରିଚାଳିତ କରିଅଛି ବୋଲି ସର୍ବ ଶକ୍ତିମାନ ଭଗବାନଙ୍କ ନିକଟରେ ମୁଁ ସବିଶେଷ ଭାବେ କୃତଜ୍ଞ; କିନ୍ତୁ ତଥାପି ପରିଣାମରେ ଅନ୍ୟ କେହି ହତାଶ ହୋଇଅଛି ବା ବ୍ୟଥିତ ହୋଇ-ଅଛି ଏହି ଚିନ୍ତାଫଳରେ ମୋର ସନ୍ତୋଷ ତିଳେମାତ୍ର ବୃଦ୍ଧି ପାଏ ନାହିଁ ।

ଯେଉଁମାନେ ମୋ ସହିତ କୌଣସି ମତାନୈକ୍ୟ ଅନୁଭବ କରନ୍ତି ନାହିଁ ସେମାନଙ୍କୁ ମୁଁ ଅନୁରୋଧ କରିପାରେ କି—ଯେଉଁମାନେ ମୋ ସହିତ ମତାନୈକ୍ୟ ଅନୁଭବ କରନ୍ତି ସେମାନଙ୍କ ପ୍ରତି ଏହି ମନୋଭାବ ପ୍ରଦର୍ଶନ କରିଓ ମୋ ସହିତ ମିଳିତ ହେବା ପାଇଁ ।

ପରିଶେଷରେ ଆମ୍ଭମାନଙ୍କର ସାହାସୀ ସୈନ୍ୟ ଓ ନାବିକ ମାନଙ୍କୁ ଏବଂ ସେମାନଙ୍କ ବୀର ଏବଂ ସୁଦକ୍ଷ ସେନାପତି ମାନଙ୍କୁ ଅଭିନନ୍ଦନ ଜଣାଉଛି ।

## ଜଣେ ଜନନୀଙ୍କୁ ପତ୍ର

ଜଣେ ଜନନୀଙ୍କର ପାଞ୍ଚଟି ପୁତ୍ର ଯୁଦ୍ଧରେ ନିହତ ହେବାରୁ ସମବେଦନା ଜ୍ଞାପନ କରି ଲିଙ୍କନ ଯେଉଁ ପତ୍ରଟି ତାଙ୍କୁ ଲେଖିଥିଲେ ବୋଧହୁଏ ତାଙ୍କଦ୍ୱାରା ଲିଖିତ ଅନ୍ୟ କୌଣସି ପତ୍ର ପ୍ରକାଶିତ ହେବା ଦିନଠାରୁ ଏହିପରି ଭାବରେ ପ୍ରଶଂସିତ ହୋଇ ନଥିଲା, କିଂବା ପରବର୍ତ୍ତୀ ବଂଶଧରମାନେ ବାରମ୍ବାର ପାଠ କରି ନଥିଲେ ।

କାର୍ଯ୍ୟନିର୍ବାହକ ଭବନ
ଓ୍ୱାସିଂଟନ, ନଭେମ୍ବର ୨୧,୧୮୬୪

ପ୍ରିୟ ଭଦ୍ର ମହୋଦୟା :

ମାସାଚୁସେଟ୍ସର ସହକାରୀ ସେନାଧ୍ୟକ୍ଷଙ୍କ ଯୁଦ୍ଧ ଦପ୍ତରର ନଥିରୁ ଦେଖିବାକୁ ପାଇଲି ତୁମର ପାଞ୍ଚଟି ପୁତ୍ର ମହତ୍ ଉଦ୍ଦେଶ୍ୟନେଇ ଯୁଦ୍ଧ ଭୂମିରେ ମରଣକୁ ବରଣ କରିଛନ୍ତି ।

ମୋର ଯେ କୌଣସି ବାର୍ତ୍ତା ତୁମର ଗଭୀର ଦୁଃଖକୁ ଲାଘବ କରିବାକୁ ଚେଷ୍ଟାକଲେ କେବଳମାତ୍ର ନିଷ୍ଫଳ ଓ ଦୁର୍ବଳ ହେବ । କିନ୍ତୁ ମୁଁ ତୁମକୁ ସାଧାରଣ ତନ୍ତ୍ର ତରଫରୁ ଧନ୍ୟବାଦ ଦେବାରୁ ବିରତ ହୋଇ ପାରିବି ନାହିଁ ଯେହେତୁ ସେମାନେ ଏହି ସାଧାରଣ ତନ୍ତ୍ରର ନିରାପତ୍ତା ପାଇଁ ମୃତ୍ୟୁ ବରଣ କରିଛନ୍ତି ।

ମୁଁ ପ୍ରାର୍ଥନା କରେ ପରମ ପିତା ଈଶ୍ୱର ତୁମର ଗଭୀର ବେଦନାକୁ ଲାଘବ କରନ୍ତୁ ଏବଂ ସ୍ୱାଧୀନତାର ଯଜ୍ଞରେ ତୁମର ସେହି ହୃତ ସ୍ନେହର ଆହୁତି ପାଇଁ ତୁମକୁ ମୁକ୍ତି ଦିଅନ୍ତୁ ।

ତୁମର ବିଶ୍ୱସ୍ତ ଓ ବିନୀତ,

ଏ, ଲିଙ୍କନ

## ଜଣେ 'ସାମ୍ବାଦିକ' ହିସାବରେ

ଦିନେ ୧୮୬୪ମସିହା ଡିସେମ୍ବର ମାସରେ ଲିଙ୍କନ ଜଣେ ସମ୍ବାଦ ସରବରାହକାରୀଙ୍କୁ ଡକାଇଲେ ଏବଂ ଶିରୋନାମା ସହିତ ନିଜେ ଲେଖିଥିବା ଗୋଟିଏ ଗଳ୍ପ ସମ୍ବାଦ ପତ୍ରରେ ପ୍ରକାଶ କରିବାକୁ ତାଙ୍କୁ ଦେଲେ ।

## ସଭାପତିଙ୍କ ସର୍ବଶ୍ରେଷ୍ଠ ଶେଷ ସଂକ୍ଷିପ୍ତ ଭାଷଣ

ଜୋହାନସନ ଦ୍ୱୀପରେ ଯୁଦ୍ଧରେ ବନ୍ଦୀହୋଇଥିବା ସ୍ୱାମୀମାନଙ୍କର ମୁକ୍ତି ପାଇଁ ଟେନେସିର ଦୁଇଜଣ ମହିଳା ଗତ ସପ୍ତାହ ଗୁରୁବାର ଦିନ ସଭାପତିଙ୍କ ଅନୁମତି ଚାହିଁଥିଲେ । ସେମାନଙ୍କୁ ଶୁକ୍ରବାର ପର୍ଯ୍ୟନ୍ତ ଅଟକା ଯାଇଥିବାରୁ ସେମାନେ ଆସିଲେ, ଏବଂ ପୁଣି ଶନିବାର ପର୍ଯ୍ୟନ୍ତ ଅଟକାଗଲା । ପ୍ରତ୍ୟେକ ଥରର ସାକ୍ଷାତରେ ଗୋଟିଏ ମହିଳା ଜୋର ଦେଇ କହିଥିଲା ଯେ ତାହାର ସ୍ୱାମୀ ଜଣେ ଧର୍ମ ପରାୟଣ ବ୍ୟକ୍ତି । ଶନିବାର ଦିନ ସଭାପତି ସେମାନଙ୍କର ସ୍ୱାମୀମାନଙ୍କୁ ମୁକ୍ତି ଦେବାପାଇଁ ଅନୁମତି ଦେଲେ ଏବଂ ସେହି ମହିଳାକୁ କହିଲେ "ତୁମେ କୁହ ତୁମର ସ୍ୱାମୀ ଜଣେ ଧର୍ମ ପରାୟଣ ବ୍ୟକ୍ତି; ଯେତେବେଳେ ତାଙ୍କୁ ଭେଟିବ ତାଙ୍କୁ କହିବ ଯେ ମୁଁ ବିଶେଷ ଭାବେ ଧର୍ମର ବିଚାର କର୍ତ୍ତା ନୁହେଁ । ମୋ ମତରେ ଯେଉଁ ଧର୍ମ ମନୁଷ୍ୟମାନଙ୍କୁ ସେମାନଙ୍କ ସରକାର ବିରୁଦ୍ଧରେ ଯୁଦ୍ଧ କରିବାକୁ ପ୍ରେରଣା ଦିଏ କାରଣ ସେମାନେ ଇଚ୍ଛା କରନ୍ତି ଯେ ସରକାର ଅନ୍ୟମାନଙ୍କର ଝାଳବୁହା ପରିଶ୍ରମ ଦ୍ୱାରା "କେତେକ ଲୋକଙ୍କ" ଜୀବନ ଧାରଣ ପାଇଁ ପ୍ରଚୁର ଭାବରେ ସାହାଯ୍ୟ କରନ୍ତୁ ନାହିଁ, ଏହା ଏକପ୍ରକାର ଧର୍ମ ନୁହେଁ ଯାହାଦ୍ୱାରା ମନୁଷ୍ୟ ସ୍ୱର୍ଗ ଅଭିମୁଖେ ଯାତ୍ରା କରି ପାରିବ ।"

ଏ, ଲିଙ୍କନ

## ଦ୍ୱିତୀୟ ଉଦ୍‌ଘାଟନ ଭାଷଣ

୧୮୬୫ ମସିହା ମାର୍ଚ୍ଚ ୪ ତାରିଖରେ ଲିଙ୍କନ ଦ୍ୱିତୀୟଥର ପାଇଁ ସଭାପତି ପଦରେ ଅଧିଷ୍ଠିତ ହୋଇ ଶପଥ ଗ୍ରହଣ କଲେ ଏବଂ ଏହି ଅବସରରେ ତାଙ୍କର ଦ୍ୱିତୀୟ ଉଦ୍‌ଘାଟନ ଭାଷଣ ଦେଇଥିଲେ । ଯଦିଓ ଯୁଦ୍ଧର ଅବସାନ ହୋଇ ନଥିଲା ତଥାପି ବିଜୟର ଆଶା ଆଖି ଆଗରେ ଥିଲା ଏବଂ ଲିଙ୍କନ ଆଗ୍ରହ ସହିତ ପ୍ରତୀକ୍ଷା କରୁଥିଲେ ଐକ୍ୟକୁ ଫେରାଇ ଆଣିବାକୁ—"ବିଦ୍ୱେଷ ପରିବର୍ତ୍ତେ ସମସ୍ତଙ୍କ ପ୍ରତି ବଦାନ୍ୟତା"—ଯେଉଁମାନେ କି ନିଜ ନିଜ ବିରୁଦ୍ଧରେ ଶତ୍ରୁ ହୋଇ ଉଠିଥିଲେ । ଏହି ସଂକ୍ଷିପ୍ତ ଭାଷଣଟି ଲିଙ୍କନଙ୍କର ସାରଗର୍ଭକ ଭାଷଣ ମଧ୍ୟରେ ଅନ୍ୟତମ ।

ଜନସାଧାରଣ ସମ୍ମୁଖରେ ଆତ୍ମପ୍ରକାଶ କରି ଦ୍ୱିତୀୟଥର ସଭାପତି ଆସନ ଗ୍ରହଣ କରିବା ସମୟରେ ଯେଉଁ ବକ୍ତୃତାଟି ଦେଇଥିଲେ, ସେଥିରେ ପ୍ରଥମଥର ପରି ଏତେ ସୁଯୋଗ ମିଳି ନଥିଲା। ବକ୍ତୃତାଟି କେତେକ ପରିମାଣରେ ଉପଯୋଗୀ ଏବଂ ସମ୍ପୂର୍ଣ୍ଣରୂପେ ଅନୁସରଣ କରାଯାଇ ପାରିବ ବୋଲି ବୋଧ ହେଉ ନଥିଲା। ଇତି ମଧ୍ୟରେ ଚାରିବର୍ଷ ବିତି ଯାଇଛି; ଜନସାଧାରଣଙ୍କ ପ୍ରତ୍ୟେକ ପରିସ୍ଥିତିରେ ଏବଂ ବିବାଦର ପ୍ରତ୍ୟେକ ସ୍ତରରେ ଆହ୍ୱାନ କରାଯାଇ ଆସୁଅଛି ଯାହାକି ଏ ପର୍ଯ୍ୟନ୍ତ ମନଯୋଗ ପୂର୍ବକ ଜାତୀୟ ଶକ୍ତିକୁ ନିମଗ୍ନ କରିଅଛି, ତେଣୁ ବର୍ତ୍ତମାନ ନୂତନତ୍ୱ ନେଇ ଖୁବ କମ୍ ପ୍ରଦର୍ଶିତ କରାଯାଇ ପାରେ। ଦେଶର ଅସ୍ତ୍ର ଶସ୍ତ୍ରର ଉନ୍ନତି ଉପରେ ସମସ୍ତ ନିର୍ଭର କରେ; ଏହା ସମସ୍ତ ଜନସାଧାରଣଙ୍କୁ :ତଥା ମୋତେ ଭଲ ଭାବରେ ଜଣାଶୁଣା; ଏହା ସମସ୍ତଙ୍କ ପକ୍ଷରେ ସନ୍ତୋଷଜନକ ଏବଂ ପ୍ରେରଣା ପୂର୍ଣ୍ଣ ବୋଲି ମୁଁ ବିଶ୍ୱାସ କରେ। ଏ ସମ୍ବନ୍ଧରେ ଭବିଷ୍ୟତର ଉଚ୍ଚାକାଂକ୍ଷା ନେଇ କୌଣସି କଥାରେ କୁହାଯାଇ ନପାରେ।

ଚାରିବର୍ଷ ପୂର୍ବେ ଏହିଭଳି ଅନୁରୂପ ପରିସ୍ଥିତିରେ ସମସ୍ତଙ୍କର ଲକ୍ଷ୍ୟ ଏକ ଭାବି ଅନ୍ତର୍ଯୁଦ୍ଧ ଉପରେ ପ୍ରତିଫଳିତ ହୋଇଥିଲା। ପ୍ରତ୍ୟେକ ଅନ୍ତର୍ଯୁଦ୍ଧର ସ୍ୱପ୍ନ ଦେଖୁଥିଲେ—ପ୍ରତ୍ୟେକ ଏହାକୁ ପ୍ରତିରୋଧ କରିବାକୁ ଚାହୁଁଥିଲେ। ଯେତେବେଳେ ଉଦ୍‌ଘାଟନ କରି ଲିଙ୍କନ ଏହି ସ୍ଥାନରେ ବକ୍ତୃତା ଦେଲେ ଯେ ଇଉନିୟନକୁ ବିନା ଯୁଦ୍ଧରେ ରକ୍ଷା କରିବାକୁ ହେବ, ସେତେବେଳେ ବିଦ୍ରୋହୀଗଣ ବିନା ଯୁଦ୍ଧରେ ଇଉନିୟନକୁ ଧ୍ୱଂସ କରିବାକୁ ଚାହିଁଲେ—ଇଉନିୟନକୁ ଧ୍ୱଂସକରି ପରସ୍ପର ଫଳ ଭୋଗ କରିବେ। ଉଭୟ ପକ୍ଷ ଯୁଦ୍ଧକୁ ଘୃଣା କରୁଥିଲେ ମଧ୍ୟ ଦଳେ ଜାତିକୁ ରକ୍ଷା କରିବା ପରିବର୍ତ୍ତେ ବରଂ ଯୁଦ୍ଧ କରିବ ଏବଂ ଅନ୍ୟପକ୍ଷ ଜାତିକୁ ରକ୍ଷା କରିବାକୁ ଯୁଦ୍ଧର ପ୍ରତିରୋଧ କରିବ ବୋଲି ଭାବୁଥାନ୍ତି। ଯୁଦ୍ଧ ଚାଲିଲା।

ସମୁଦାୟ ଲୋକ ସଂଖ୍ୟାର ୧/୪ ଅଂଶ ଥିଲେ ବର୍ଣ୍ଣଗତ ଦାସ, ସେମାନେ ରାଜ୍ୟର ବିଭିନ୍ନ ସ୍ଥାନରେ ସାଧାରଣତଃ ବାସ ନ କରି ଦେଶର ଦକ୍ଷିଣାଞ୍ଚଳରେ ବାସ କରୁଥିଲେ। ଏହି ଦାସମାନଙ୍କୁ ଏକ ସ୍ୱତନ୍ତ୍ର ଏବଂ ଶକ୍ତିଶାଳୀ ଧରଣର ସ୍ୱାର୍ଥର ଅସ୍ତ୍ରରୂପେ ବ୍ୟବହାର କରୁଥିଲେ। ପ୍ରତ୍ୟେକ ଜାଣନ୍ତି ଏହି ସ୍ୱାର୍ଥହିଁ କେତେକ ପରିମାଣରେ ଯୁଦ୍ଧର କାରଣ। ଏହି ସ୍ୱାର୍ଥକୁ ଦୃଢ଼ୀଭୂତ, ସ୍ଥାୟୀ ଏବଂ ପ୍ରସାରିତ କରିବା ଉଦ୍ଦେଶ୍ୟରେ ବିଦ୍ରୋହୀମାନେ ଇଉନିୟନକୁ ଏପରିକି ଯୁଦ୍ଧ ଦ୍ୱାରା ମଧ୍ୟ ଧ୍ୱଂସ କରିବାକୁ ଲକ୍ଷ୍ୟ କରିଥିଲେ। ଏହି ସ୍ୱାର୍ଥ ଯେତେବେଳେ ରାଷ୍ଟ୍ରୀୟ ସୀମା ଲଙ୍ଘନ କଲା ସେତେବେଳେ ସରକାର ଏହାକୁ ଦମନ କରିବା ବ୍ୟତୀତ ବେଶି କିଛି ଦାବୀ କରି ନଥିଲା। ଯୁଦ୍ଧ ବର୍ତ୍ତମାନ ଯେଉଁ ଦୃଢ଼ୀଭୂତ ଅବସ୍ଥାରେ ପହଞ୍ଚିଛି ତାହା କେହି ଆଶା କରିନଥିଲେ। କେହି ଆଶା କରିନଥିଲେ ଯେ ଯୁଦ୍ଧର କାରଣ ଶେଷ ହୋଇପାରେ କିମ୍ବା ଏହା ପୂର୍ବରୁ ଯୁଦ୍ଧ ବନ୍ଦ ହୋଇପାରେ। ପ୍ରତ୍ୟେକ ଖୁବ୍ ସହଜରେ ଜୟଯୁକ୍ତ ହେବାକୁ ଚାହିଁଥିଲେ ଏବଂ ଶେଷ ଫଳ ଖୁବ କମ୍ ପରିମାଣରେ ମୌଳିକ ଏବଂ ବିସ୍ମୟଜନକ ଥିଲା। ପ୍ରତ୍ୟେକ ଏକ ବାଇବେଲକୁ ଅଧ୍ୟୟନ କରନ୍ତି; ଏବଂ ଏକ ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତି; ଏବଂ ପ୍ରତ୍ୟେକ ପ୍ରତ୍ୟେକଙ୍କୁ ପରାସ୍ତ କରିବା ପାଇଁ ତାଙ୍କର ଅନୁଗ୍ରହ ପ୍ରାର୍ଥନା କରନ୍ତି। ଏହା ବିସ୍ମୟକର ବୋଧ ହୋଇପାରେ ଯେ କୌଣସି ଲୋକ ଅନ୍ୟର ଝାଳବୁହା ପରିଶ୍ରମରେ ତାହାର ନିଜର ଜୀବିକା ଅର୍ଜ୍ଜନ କରିବାକୁ ଈଶ୍ୱରଙ୍କ ସାହାଯ୍ୟ ଭିକ୍ଷା କରିବାକୁ ସାହାସ କରିପାରେ, କିନ୍ତୁ ଆମ୍ଭେମାନେ ବିଚାର କରିବା ନୁହେଁ ଯେ ଆମ୍ଭମାନଙ୍କୁ କେହି ବିଚାର କରିବେ ନାହିଁ। ଉଭୟଙ୍କର ପ୍ରାର୍ଥନାର ଉତ୍ତର ଦିଆ ଯାଇ ନପାରେ; କୌଣସିଟି ସମ୍ପୂର୍ଣ୍ଣ ଭାବରେ ଉତ୍ତର ଦେଇ ପାରିନାହିଁ। ଈଶ୍ୱରଙ୍କର ନିଜର ଉଦ୍ଦେଶ୍ୟ ଅଛି।

"ଅପରାଧ ଯୋଗୁଁହିଁ ପୃଥିବୀ ଅଭିଶପ୍ତ ! କାରଣ ସେହି ଅପରାଧ ପାଇଁ ଏହା ନିଶ୍ଚୟ ଦରକାର; କିନ୍ତୁ ଯେଉଁମାନେ ଅପରାଧ ପାଇଁ ଦାୟୀ ସେହିମାନଙ୍କ ପାଇଁ ଏହି ଅଭିଶାପ ସମୁଚିତ !" ଯଦି ଆମ୍ଭେମାନେ ମନେକରୁଁ ଯେ ମାର୍କିଣ ଯୁକ୍ତରାଷ୍ଟ୍ରର ଦାସପ୍ରଥା ସେହି ଅପରାଧ ମଧ୍ୟରେ ଅନ୍ୟତମ ତାହାହେଲେ ଈଶ୍ୱରଙ୍କ ବିଧାନ ଅନୁଯାୟୀ ଏହି ଅଭିଶାପ ନିଶ୍ଚୟ ପ୍ରଯୁଜ୍ୟ ଥିଲା ଏବଂ ଏହାକୁ ନିର୍ଦ୍ଧାରିତ ସମୟ ମଧ୍ୟରେ ବିସ୍ତାରିତ କରି ସାରିବା ପରେ ବର୍ତ୍ତମାନ ସେ (ଈଶ୍ୱର) ଏହାକୁ ଅପସାରଣ କରିବାକୁ ଇଚ୍ଛୁକ । ସେ ଦକ୍ଷିଣ ଏବଂ ଉତ୍ତର ଉଭୟ ପାର୍ଶ୍ୱକୁ ଏହି ଭୟାନକ ଅନ୍ତର୍ଯୁଦ୍ଧରେ ବିଧ୍ୱଂସ୍ତ କରାଇଛନ୍ତି, ଯେ ହେତୁ ଏହି ଅପରାଧ ପାଇଁ ସେମାନେ ଦାୟୀ । ଈଶ୍ୱରବିଶ୍ୱାସୀମାନେ ତାଙ୍କଠାରେ ଯେଉଁ ଐଶ୍ୱରିକ ଗୁଣର ଆରୋପ କରିଥାନ୍ତି ସେଥିରେ ଆମ୍ଭେମାନେ କୌଣସି ବ୍ୟତିକ୍ରମ ଦେଖି ପାରିଲୁ କି ? ଆନନ୍ଦର ସହିତ ଆମ୍ଭେମାନେ ଆଶା କରିବା—ବ୍ୟାକୁଳତାର ସହିତ ଆମ୍ଭେମାନେ ପ୍ରାର୍ଥନା କରିବା—ଯେ ଯୁଦ୍ଧର ଏହି ସମୁଚିତ ଶାସ୍ତି ଶୀଘ୍ର ଦୂର ହେଉ । ଯଦି ଈଶ୍ୱର ତେବେ ସୁଦ୍ଧା ଇଚ୍ଛା କରନ୍ତି ଯେ ଦାସମାନଙ୍କର କଠିନ ପରିଶ୍ରମ ଦ୍ୱାରା ୨୫୦ ବର୍ଷର ସଞ୍ଚିତ ଅର୍ଥ ଯେ ପର୍ଯ୍ୟନ୍ତ ନଷ୍ଟ ନହୋଇଛି, ଏବଂ ଯେ ପର୍ଯ୍ୟନ୍ତ ସେମାନଙ୍କ ଧମନୀରୁ ପ୍ରବାହିତ ହୋଇଥିବା ପ୍ରତ୍ୟେକ ରକ୍ତବିନ୍ଦୁ ଅନ୍ୟର ଅଶୀ ଦ୍ୱାରା ପ୍ରବାହିତ ରକ୍ତଦ୍ୱାରା ପ୍ରତିଦାନ ନ ପାଇଛି, ସେ ପର୍ଯ୍ୟନ୍ତ ଏ ଯୁଦ୍ଧ ଚାଲିବ । ଏବଂ ଠିକ୍ ଏହା ୩ହଜାର ବଷ ପୂର୍ବେ କୁହା ଯାଇଥିଲା ଏବଂ ବର୍ତ୍ତମାନ ନିଶ୍ଚୟ କୁହାଯିବ "ଭଗବାନଙ୍କର ବିଚାର ସମ୍ପୂର୍ଣ୍ଣରୂପେ ନ୍ୟାୟସଙ୍ଗତ ଏବଂ ଯଥାର୍ଥ ।

ଯେ ହେତୁ ଈଶ୍ୱର ଆମ୍ଭଙ୍କୁ ଉପଯୁକ୍ତ ବିଚାର ଶକ୍ତି ପ୍ରଦାନ କରିଛନ୍ତି ତେଣୁ କାହାରି ପ୍ରତି ବିଦ୍ୱେଷ ଭାବ ନ ରଖି, ସମସ୍ତଙ୍କ ପ୍ରତି ବଦାନ୍ୟତା ଭାବ ଦେଖାଇ, ପ୍ରକୃତ ନ୍ୟାୟ ପଥରେ ଅଟଳ ରହି କାର୍ଯ୍ୟ ଶେଷ କରିବାକୁ ଚେଷ୍ଟା କରିବା; ଜାତୀୟ କ୍ଷତକୁ ଆବଦ୍ଧ ରଖି ତାହାଙ୍କର ବିଧବା ସ୍ତ୍ରୀ ଏବଂ ବାଳକ ବାଳିକାମାନଙ୍କ ପ୍ରତି ଯତ୍ନବାନ ହେବା ଯେଉଁମାନେ ଯୁଦ୍ଧକୁ ସହ୍ୟ କରିଅଛନ୍ତି—ଏହିପରି ସମସ୍ତ କାର୍ଯ୍ୟ କରିବା ଯାହାକି ଆମ୍ଭମାନଙ୍କ ନିଜ ନିଜ ମଧ୍ୟରେ ଏବଂ ସମସ୍ତ ଦେଶ ସହିତ ଚିର ଶାନ୍ତି ସ୍ଥାପନ କରିବାରେ ସାହାଯ୍ୟ କରିବ ।

## ପୁନର୍ଗଠନ ସମ୍ବନ୍ଧରେ

୧୮୬୫ ମସିହା ଏପ୍ରିଲ ମାସରେ ଯୁଦ୍ଧ ଶେଷ ହେଲା । ଯୁଦ୍ଧଶେଷ ହେବାର ଦୁଇଟି ରାତ୍ରି ପରେ ହ୍ୱାଇଟ୍ ହାଉସକୁ ଦଳେ ସଙ୍ଗୀତଜ୍ଞ ସାକ୍ଷାତ୍ କରିବାକୁ ଆସିଥିଲେ ବେଳେ ଲିଙ୍କନ ତାଙ୍କୁ କେତେକ କଥା କହିଥିଲେ । ବିଜୟ ପରେ ଲୋକମାନେ ଆନନ୍ଦ ଉତ୍ସବ କରିବାକୁ ଆଶା କରିଥିବା ବେଳେ ଧୀର ଶବ୍ଦରେ ଲିଙ୍କନ ପରସ୍ପର ମଧ୍ୟରେ ଆତ୍ମୀୟତା ସ୍ଥାପନ କରିବାକୁ ମନ ବଳାଇ ଥିଲେ; ଏବଂ ଏହି ବୃହତ୍ତର କାର୍ଯ୍ୟ ସମ୍ପନ୍ନ କରିବାରେ ଯେପରି କାହାର ବିଶେଷ କ୍ଷତି ନହେବ ସେଥିପାଇଁ ମଧ୍ୟ ସେ

ଆଶାୟୀ ଥିଲେ । ଯୁଦ୍ଧରେ ଜୟଯୁକ୍ତ ହେବା ସମ୍ବନ୍ଧରେ ଯାହା କହୁଥିଲେ ତା ଅପେକ୍ଷା ମୁକ୍ତି ଉପରେ ନ୍ୟସ୍ତଥିବା କାର୍ଯ୍ୟ ସମ୍ପର୍କରେ ବେଶି କହୁଥିଲେ । କେହି ଲୋକ ଜାଣି ନଥିଲେ ଯେ ସେ ତେତେବେଳେ ଯେଉଁ କାର୍ଯ୍ୟ ପାଇଁ ନିଜକୁ ଉତ୍ସର୍ଗ କରୁଥିଲେ ୩ଟି ରାତି ପରେ ସେହି କାର୍ଯ୍ୟଟି ଜଣେ ଗୁପ୍ତ ହତ୍ୟାକାରୀର ବନ୍ଧୁକର ଗୁଳିଦ୍ୱାରା ଛଡାଇ ନିଆହେବ । ଏହି ବକ୍ତୃତାଟି ଜନସାଧାରଣ ସମ୍ମୁଖରେ ତାଙ୍କର ଶେଷ ବକ୍ତୃତା ।

ଏହି ସନ୍ଧ୍ୟା ସମୟରେ ଆମ୍ଭେମାନେ ଦୁଃଖ ପରିବର୍ତ୍ତେ ଗଭୀର ଆନନ୍ଦର ସହିତ ଏକତ୍ରିତ ହୋଇଛୁଁ । ପେଟରସବର୍ଗ ଏବଂ ରିଚମଣ୍ଡକୁ ପରିତ୍ୟାଗ କରି ମୁଖ୍ୟ ବିଦ୍ରୋହୀ ସୈନ୍ୟବାହିନୀ ତାଙ୍କର ସୈନ୍ୟଦଳଙ୍କୁ ହସ୍ତାନ୍ତର କରିବା ଫଳରେ ଆମ୍ଭମାନଙ୍କୁ ଯେଉଁ ପବିତ୍ର ଏବଂ ପ୍ରଶାନ୍ତ ଆଶା ପ୍ରଦାନ କରିଛନ୍ତି ସେ ଆନନ୍ଦର ଢେଉକୁ ଦମନ କରିହେବ ନାହିଁ । ଯାହାଙ୍କ ଠାରୁ ଏହି ସମସ୍ତ ଆଶୀର୍ବାଦ ପାଇଛେ ତାହାଙ୍କୁ ନିଶ୍ଚୟ ଭୁଲି ପାରିବା ନାହିଁ । ଦେଶବାସୀଙ୍କୁ ଧନ୍ୟବାଦ ଜ୍ଞାପନ କରିବା ପାଇଁ ଏକ ଘୋଷଣାପତ୍ର ପ୍ରସ୍ତୁତ ହୋଇଅଛି ଏବଂ ଏହା ଠିକ୍‌ରୂପେ ପ୍ରଚାର କରାଯିବ......

ନିକଟରେ ଜୟଲାଭ କରିବା ଫଳରେ ବିଧିସଙ୍ଗତ କ୍ଷମତାକୁ ପୁନଃ-ପ୍ରତିଷ୍ଠା ଏବଂ ପୁନର୍ଗଠନ କରିବାର ଦୀର୍ଘଦିନର ପ୍ରାରମ୍ଭିକ ଆଶା ଅଧିକ ପରିମାଣରେ ଆମ୍ଭର ଲକ୍ଷ୍ୟ ଉପରେ ଚାପ ଦେଇ ଆସୁଅଛି । ଏହି ଆଶାର ପଥ ବିଭିନ୍ନ ପ୍ରକାର ଅସୁବିଧାରେ ପରିପୂର୍ଣ୍ଣ ସ୍ୱାଧୀନ ଦେଶମାନଙ୍କ ମଧ୍ୟରେ ଗୋଟିଏ ଯୁଦ୍ଧ ଯେପରି ଆଶାଦୃଶ୍ୟ ଆମ୍ଭମାନଙ୍କ ମଧ୍ୟରେ ସେହିପରି ଏକ କ୍ଷମତାପ୍ରାପ୍ତ ପରିଚାଳକ ମଧ୍ୟ ଆଶାଦୃଶ୍ୟ । କୌଣସି ଲୋକ ଅନ୍ୟ ଲୋକ ପାଇଁ ଯୁଦ୍ଧ ପରିତ୍ୟାଗ କରିବାର କ୍ଷମତା ନାହିଁ । ନିଶ୍ଚୟ ଆମ୍ଭେମାନେ ବିଶୃଙ୍ଖଳା ମନୋଭାବ ଏବଂ ବିରୁଦ୍ଧାତ୍ମକ ଆଦର୍ଶ ନେଇ ଏହା ଆରମ୍ଭ କରିଛୁଁ । ନହେଲେ ଆମ୍ଭେ ଯେଉଁମାନେ ସ୍ୱଦେଶାନୁରାଗୀ ବ୍ୟକ୍ତି ସେମାନଙ୍କ ମଧ୍ୟରେ ଚାଲିଚଳନ, ଆଚାର ବ୍ୟବହାର ଏବଂ ପୁନର୍ଗଠନରେ ପାର୍ଥକ୍ୟ ରହିଅଛି—ଆମ୍ଭେମାନେ ସମସ୍ତେ ଏକମତ ଯେ ତଥାକଥିତ ସନ୍ଧିଯୁକ୍ତ ପ୍ରଦେଶମାନଙ୍କ ସହିତ ୟୁନିୟନର ପ୍ରକୃତ ସମ୍ପର୍କ ନାହିଁ; ଏବଂ ସରକାରଙ୍କ ସାମରିକ ଏବଂ ବେସାମରିକ ଉଭୟ ଶକ୍ତିର ପ୍ରଧାନ ଲକ୍ଷ୍ୟ ହେଉଛି ଏହି ସମ୍ପର୍କ ସ୍ଥାପନ କରିବା । ମୁଁ ବିଶ୍ୱାସ ଯେ କରେ ଏହା ଖୁବ୍ ସମ୍ଭବ ଆହୁରି ମଧ୍ୟ ସହଜ । ଏହି ରାଜ୍ୟ ଗୁଡ଼ିକ ୟୁନିୟନରୁ ସର୍ବଦା ଅଲଗା ହୋଇ ରହିଛନ୍ତି ସେ ସମ୍ବନ୍ଧରେ କୌଣସି ବିଚାର କରିବା ଦରକାର ନାହିଁ । ଯେହେତୁ ସେମାନେ ନିଜ ଗୃହରେ ଶାନ୍ତି ଅନୁଭବ କରୁଛନ୍ତି ତେଣୁ ସେ ସେମାନେ ସର୍ବଦା ବିଦେଶରେ ରହୁଥିଲେ କି ନା ତାହା ଅନାବଶ୍ୟକ । ସମସ୍ତେ ସଙ୍ଗଠିତ ଭାବରେ ୟୁନିୟନ ଏବଂ ପ୍ରଦେଶ ଗୁଡ଼ିକ ମଧ୍ୟରେ ସୁସମ୍ପର୍କ ସ୍ଥାପନ କରିବାକୁ ଉପଯୁକ୍ତ କାର୍ଯ୍ୟ କରିବା । ପ୍ରତ୍ୟେକେ ସର୍ବଦା ଧୀର ଭାବରେ ନିଜ ନିଜର ମତ ବ୍ୟକ୍ତ କରିବେ ଯେ ହୁଏତ ସେ ଏହି କାର୍ଯ୍ୟ କରିବା ଫଳରେ ରାଜ୍ୟଗୁଡ଼ିକୁ ୟୁନିୟନ ଅନ୍ତର୍ଭୁକ୍ତ କଲେ, ନା କେବଳମାତ୍ର ସେମାନଙ୍କ ଉପଯୁକ୍ତ ପରିମାଣରେ ସାହାଯ୍ୟ ଦେଲେ ।

## ଅନ୍ତିମ ଦିବସର ସ୍ମାରକ-ଲିପି

୧୮୬୫ ମସିହା ଏପ୍ରିଲ ୪ ତାରିଖରେ ଜୀବନର ଅନ୍ତିମ ଦିବସରେ ଲିଙ୍କନ ବହୁତ ଚିଠିଏ ବାର୍ତ୍ତା ଏବଂ ସ୍ମାରକପତ୍ର ଲେଖିଥିଲେ । ଶେଷ ଲେଖା ମଧ୍ୟରୁ ସେନାପତି ଜେମସ୍ ଏଚ ଭ୍ୟାନ ଏଲେନଙ୍କୁ ଖଣ୍ଡିଏ ପତ୍ର ଲେଖିଥିଲେ ।

ୱାସିଂଟନ,
ଏପ୍ରିଲ, ୧୪, ୧୮୬୫

ପ୍ରିୟ ମହାଶୟ !

ମୁଁ ମୋର ବନ୍ଧୁମାନଙ୍କର ପରାମର୍ଶ ଗ୍ରହଣ କରିବାକୁ ଇଚ୍ଛାକରେ ଏବଂ ସେ ଗୁଡ଼ିକୁ ଖୁବ୍ ସତର୍କର ସହିତ ବ୍ୟବହାର କରେ······ତୁମେ ମୋତେ ଯେଉଁ ସାନ୍ତ୍ୱନା ଦେଇଛ ଯେ ମୁଁ ତୁମ ଭଳି ରକ୍ଷଣଶୀଳ ବ୍ୟକ୍ତିମାନଙ୍କ ଦ୍ୱାରା ସାହାଯ୍ୟ ପ୍ରାପ୍ତ ହେବି ସେଥିପାଇଁ ମୁଁ ତୁମକୁ ଧନ୍ୟବାଦ ଅର୍ପଣ କରୁଅଛି । ଗମ୍ଭୀର ଉଦ୍ୟମ ଫଳରେ ମୁଁ ଇଉନିୟନକୁ ଫେରାଇ ଆଣିପାରେ ଏବଂ ଏହା କଲେ ତୁମ୍ଭ ଭାଷା ଅନୁସାରେ ହୃଦୟର ଏକତା, ହସ୍ତର ଏକତା ଏବଂ ପ୍ରଦେଶ ମଧ୍ୟରେ ଏକତା ।

ତୁମର ବିଶ୍ୱସ୍ତ
ଏ, ଲିଙ୍କନ

ଦକ୍ଷିଣ ପାର୍ଶ୍ୱରେ ଲିଙ୍କନର ପ୍ରସିଦ୍ଧ ପ୍ରତିମୂର୍ତ୍ତି ଟି ଜାତୀୟ ଗ୍ଲକଯାମ ୱାସିଂଟନରେ ଅବସ୍ଥିତ । ଏହା ଜଣେ କଳାକାରଙ୍କ ଦ୍ୱାରା ଅଙ୍କିତ ।

ଏହି ମନ୍ଦିରରେ
ଏବଂ ଯାହାପାଇଁ ସେ
ଯୁକ୍ତରାଷ୍ଟ୍ରକୁ ରକ୍ଷା କରିଥିଲେ
ସେହି ଜନଗଣର ହୃଦୟରେ ଆବ୍ରାହାମ ଲିଙ୍କନଙ୍କ
ସ୍ମୃତି ଚିରକାଳ ପାଇଁ ସଯତ୍ନେ ରଖାଗଲା ।



